ପଲ୍ଲୀ-ଗୀତ
ସଂଗ୍ରହ




# କବିଚନ୍ଦ୍ର ଗୀତାବଳୀ




( ତୃତୀୟ ଖଣ୍ଡ—ଭଜନ-ଜଣାଣ ବିଭାଗ )

କବିଚନ୍ଦ୍ର

## କାଳୀଚରଣ ପଟ୍ଟନାୟକ

ନାଟ୍ୟାଗ୍ରଣୀ

ପ୍ରକାଶକ:—

**ଇଉନାଇଟେଡ୍ ବୁକ୍ ହାଉସ୍**

ବାଲୁବଜାର, କଟକ-୨

ପ୍ରଚ୍ଛଦପଟ :

**ଶ୍ରୀ ଅସୀତ୍ ମୁଖାର୍ଜୀ**

ଶିଳ୍ପରୂପମ୍

କଟକ-୨

ମୁଦ୍ରାକର :

**ରେଖା ପ୍ରେସ୍**

କଟକ-୨

ପ୍ରଥମମୁଦ୍ରଣ :

୧୯୭୫

ଦଶହରା,

ଟ ୨୦-୦୦

ବନ୍ଧାଇ-ଅତିରିକ୍ତ ଏକଟଙ୍କା

# ଉତ୍ସର୍ଗ

ଭୂମିଷ୍ଠ ପ୍ରଣତି ପୂର୍ବକ———"

"× × × ସ୍ୱର୍ଗାଦପି ଗରୀୟସୀ"

୧୩୭୨-୭୩ ସାଲ | ଅଯୋଗ୍ୟ—
ଦଶହରା | —କାଳୀଚରଣ—

ଶ୍ରୀଚରଣେଷୁ,

ବୋଉ,

ତୋ କୋଳର ଏକମାତ୍ର ସନ୍ତାନ ରୂପେ ବଡ଼ ଅଳିଅଳ କରି ବଢ଼ାଇଥିଲୁ ମତେ । ତୁ କେତେ ପଣ୍ଡିତା ଥିଲୁ, କେତେ ଗୁଣବନ୍ତୀ ଥିଲୁ, ସେକଥା ମୋ ମୁହଁ ବା କଲମ ବର୍ଣ୍ଣନା କରିପାରିବ ନାହିଁ । ତୋତେ ଯେଉଁମାନେ ଜାଣିଛନ୍ତି ସେମାନେ ହିଁ କହିବେ ଯେ ନୂଆଗଡ଼ର ଏକ ନିପଟ ମଫସଲରେ, ପୁଣି ସେକାଳେ ତୁ କେମିତି ସଂସ୍କୃତ ସାହିତ୍ୟ ଆୟତ୍ତ କରି ପାରିଥିଲୁ । ଗୀତଗୋବିନ୍ଦ ଥିଲା ତୋର କଣ୍ଠମାଳା । ପୁରୁଣା ଛାନ୍ଦ-ସାହିତ୍ୟର ବହୁତ ଅର୍ଥ କହି-ପାରୁଥିଲୁ ତୁ । ଆଜି ଲୁହ ଆଖିରେ ମନେ ପଡ଼ୁଯାଉଛି, ଯେବେ ସକାଳେ ମୁଁ ଟିକିଏ ଡେରିଯାଏ ଶୋଇଥିବି । ତୁ କଳାମାଣିକ ଗୀତ ଗାଇ ମୋତେ ଉଠାଉଥିଲୁ । ଏବେ ମଧ୍ୟ ଏକାନ୍ତ ବେଳେ ସୁ-ପ୍ରଭାତରେ ସେ ଗୀତଟି କାନରେ ଗୁଞ୍ଜରି ଉଠେ ମୋର । ଉଣେଇଶି ବର୍ଷ ବୟସରେ ବାପା ମୋତେ ଛାଡ଼ି ଚାଲିଗଲେ । ତୋ'ର ସ୍ନେହାଶୀର୍ବାଦ ମୋତେ ଗଢ଼ିଆଣିଲା ୧୯୮୯ ସାଲ ଡିସେମ୍ବର ମାସଯାଏ । ତା'ପରେ ସବୁ ଲିଭିଗଲା.....ଦେଉଳଖଣ୍ଡା ଭିତରେ । ତୁ ମତେ ଦେଇଛୁ ଭଜନ-ଜଣାଣ ଲେଖିବାର ପ୍ରେରଣା । ଏବେ ବୁଢ଼େଇ, ପିଲାଟିବେଳୁ କେତେ ଗୀତ ଲେଖିଛି । ସାଇତି ନ ଜାଣି କୁଆଡ଼େ ହଜିଗଲାଣି । ସେ ଭଳି ଆଉ ଲେଖି ହେଉ ନାହିଁ ଏବେ । ମୋର ପ୍ରଥମ ଜଣାଣ ଲେଖା ବେଳକୁ ମୋତେ ପ୍ରାୟ ଦଶ ବର୍ଷ, ଅପରପ୍ରାଇମେରି

ପଢ଼ିବାବେଳେ—ବୋଧହୁଏ ୧୯୧୦ ସାଲ ହେବ । ସେ ଲେଖାଟି ମିଳୁ ନାହିଁ । ପଦେମାତ୍ର ମନେ ଅଛି –

"ଦେବୀ ଗୋ, ପରମାନନ୍ଦ ଦାୟିନୀ
ସଦ୍ଯଗନ୍ଧ ପ୍ରସୂନ ମାଳିନୀ, ମା ଶ୍ମଶାନ ବିଳାସିନୀ
ଜୟ ଦସ୍ଯୁ ଘାତେ, ସିଂହବାହିନୀ, ହର ହୃଦୟ ପରସ୍ବରଣୀ

× × × × ×

ଶରଣ କାଳୀଚରଣ — ଶ୍ରୀପଦେ କରେ ଜଣାଣ···"

× × × × ×

ଆଉ ହେତୁ ହେଉ ନାହିଁ ।

ଗୀତଟି ଲେଖି ତୋତେ ଦେଖାଇଥିଲି. ଗାଇଥିଲି । ତୋର ସେତେବେଳର ଆଶୀର୍ବାଦଭରା ସପ୍ରଶଂସ ଦୃଷ୍ଟି ଆଜ ମଧ୍ୟ ଲୁହ-ଗାଧୁଆ ହୋଇ ଦିଶୁଛି ମୋତେ । ସେ ଦିନ ସଞ୍ଜବେଳେ ଅଗଣାରୁ ଗୋଲାପ ଫୁଲଟିଏ ମୋ ହାତରେ ଦେଇ କହିଥିଲୁ—"ଯା, ମାଆଙ୍କୁ ମୁଣ୍ଡି ଆମାରି, ତୋ ଗୀତଟିକୁ ତାଙ୍କ ପାଖେ ଗାଇ ଦେଇ ଆସିବୁ ।" ଇଷ୍ଟଦେବୀ ଚର୍ଚ୍ଚିକାଙ୍କୁ ଗୀତଟି ଶୁଣାଇ ଆସିଲି ।

ଗୀତଟି ହଜାଇ ଦେଇଛି । ଆଉ ପଦେକେତେ ଯୋଡ଼ି ଦେବାକୁ ଏବେ ସାହସ ହେଉନାହିଁ । ମୋ ଗୀତ ଶୁଣି, ଭଜନ ଗୁଆଇ ଆଉ କିଏ ଆନନ୍ଦ ହେବ; କିଏ ଆଖି ଛଳ ଛଳ କରି ମୁଣ୍ଡରେ ମୋର ଆଉ ହାତ ବୁଲାଇ ଦେବ ? ସବୁ ଯାଇଛି । ଏଇ ତ ସଂସାର !

ଝୁ ଗୁଣୁଥିଲୁ – ସୁଖ ପାଉଥିଲୁ – ତୋର ଚରଣରେ ଆଖି ପାଣିରେ ଧୋଇ ଏ ଗୀତମଞ୍ଜରୀଟି ଆଜ ଭେଟୁଛୁ ।

ବୋଉ ! ଅଧମ, ଅଯୋଗ୍ୟ, ନଗଣ୍ୟ ସନ୍ତାନର କୋଟି କୋଟି ଅପରାଧ କ୍ଷମା କର ।

ଭୂମିଷ୍ଠ ପ୍ରଣତି ପୂର୍ବକ

ତୋର

କୁପୁତ୍ର

– କାଳୀ –

—କଟକ—

ଯୁନଆଁ

ତା ୨୦-୯-୫୩



## ଆଉ ଦୁଇପଦ

ଏଥି ପୂର୍ବରୁ 'ଗୀତ-ମଞ୍ଜରୀ' ନାଆଁରେ ଖଣ୍ଡିଏ 'ଭଜନ-ଜଣାଣ' ବହି ମୁଁ ଛପାଇଥିଲି । ବହି ବଜାରରୁ ସରିଯାଇଛି ।

ତାହାର ଅଗ୍ରଲେଖାଟି ଏ ବହିର ମୁଖବନ୍ଧ ରୂପେ ରହିଛି । ସେ ବହିର ୪୦ଟି ଗୀତ ସହିତ ଏଇ ଗୀତାବଳୀର ତୃତୀୟ ଖଣ୍ଡରେ ଆଉଗୁଡ଼ିଏ ଜଣାଣ ଭଜନ ମିଶାମିଶି କରି ଦଉଛି । ଯାହା ବାହାରେ ଆହୁରି କେତେ ରଚନା ଏଣେତେଣେ ପଡ଼ି କୁଆଡ଼େ ହଜି ଗଲଣି । କେତେ ଲେଖା ବି ଗାୟକ ବନ୍ଧୁମାନଙ୍କ ପାଖେ ଅଛି । ସବୁତକ ସଂଗ୍ରହ କରିହୋଇ ପାରିନାହିଁ । ଏତକ ବି ମୋ ପକ୍ଷେ ଗୋଟାଇ ସାଉଁଟି ଠୁଳକରିବା ସମ୍ଭବହୋଇ ପାରି ନ ଥାନ୍ତା । କଲ୍ୟାଣୀୟ ଶ୍ରୀମାନ୍ ନଗେନ୍ଦ୍ରନାଥ ମହାପାତ୍ର ମୋ ବର୍ଷିକିଆ ଟୀପାଖାତାମାନଙ୍କରୁ ଖୋଜି କରି ଏଗୁଡ଼ିକୁ ଏକାଠି କରିଛନ୍ତି । ତାଙ୍କୁ ଶୁଖିଲା ଧନ୍ୟବାଦ୍ ଦେବାକୁ ମନ ବଳୁ ନାହିଁ । ମନଭରି ଆଶୀର୍ବାଦ କରୁଛି । ଆଉ ଜଣେ ବନ୍ଧୁ ଗୋକୁଳବାବୁ—ଶ୍ରୀ ଗୋକୁଳଚନ୍ଦ୍ର କର । ସେ ପ୍ରେରଣା ଦେଇ-ନଥିଲେ ଗୀତାବଳୀ ଛପାହୋଇ ନଥାନ୍ତା ଯେ, ଛପି ରହିଥାନ୍ତା । ତାଙ୍କ ଅକୃତ୍ରିମ ସ୍ନେହ ମୋର ଅପାସୋରି ହୋଇ ରହିଲା । ପୁଣି-ପ୍ରିୟତମ ଶ୍ରୀମାନ୍ ତ୍ରିଲୋଚନ ଦାଶ ଲେଖାଗୁଡ଼ିକ ଝିଙ୍ଗାରି ମୋତେ ଯଥେଷ୍ଟ ସାହାଯ୍ୟ ଦେଇଛନ୍ତି । ସେ ମଧ୍ୟ ଧନ୍ୟବାଦର ଅଂଶୀଦାର ।

ଶେଷରେ ମୋ କଥା କହୁଛି :—

ଗୀତ ତ ଲେଖେଁ—ଓଡ଼ଶୀ, ଭଜନ, ଜଣାଣ, ଛାନ୍ଦ, ପଲ୍ଲୀ ଆଉ ଆଧୁନିକ—ସବୁ କିସମର । ହେଲେ, ଅନେକ ଭଜନ-ଜଣାଣ ଲେଖିଲାବେଳେ ମୋର ଯେମିତି ମନେ ହୁଏ, 'ମୋ' ମନ ଓ ମୋ 'ଦେହ'ଟା ଅଲଗା ଅଲଗା । ଏତିକି କହିଲି । ଏବେ ନହେଲେ, କେବେ ତ କେହି ଜଣେ ହେଲେ ମୋର ଏ କଥାପଦକ ବୁଝିବେ ।

—ଆଶା ବୈତରଣୀ ନଦୀ—

କାଳୀଚରଣ

# ସୂଚୀ

# କବିଚନ୍ଦ୍ର ଗୀତାବଳୀ

( ଚତୁର୍ଥ ଖଣ୍ଡ )

❋ ପଲ୍ଲୀ-କୀର୍ତ୍ତନ ବିଭାଗ ❋

— ମୁକ୍ତି-ପଥେ —

# ଭଜନ-ଜଣାଣ

( ୧ )

ହରି ! ଭରି ଦେ' ନୟନେ ନୀର ଧାର
ଝୁରି ହେଲି ନିଶିଦିନ ସାର ॥ ୦ ॥
ନିରବଧି ଘେରି ଦେ' ଦେ' ଜୀବନେ
ବାଦଲ ଘନ ଘୋର ଛାଇ,
ଦାମିନୀ ଝଲକେ—ପଲକେ ପଲକେ
ଝର ଝର ନୀର ବରଷାଇ,
ଦେ' କରି ଚିର ପଥ ହାର ।୧।
ଶଶୀ ହସ ରାତି—ନିତି ମୋର ସାଥି
ଜନମେ ଏ ନିଶି ନ ପାହୁ,
ଉପବନେ ମୋର—ନ ଆସୁ ବସନ୍ତ
ରସିଆ କୋଇଲି ନ ଗାଉ;
ହର କବଶଶୀ ଆଖି-ତାର ।୨।



( ୨ )

ଫୁଲ୍ଲ ମାଲତୀ-ପୁଞ୍ଜ ନିକୁଞ୍ଜ ତଳେ,
ଶ୍ୟାମ ଚଞ୍ଚଳ-ମଞ୍ଜିର ମଞ୍ଜୁ ଖେଳେ । ୦ ।
କଟି ପୀତ ଧଟି ଫିଟି ଲୁଟି ଲୋଳେ,
ନୀଳ ମେଘେ କି ବିଜୁଳି ଗୁଳି ଚଳେ । ୧ ।
ବହଇ ମଳୟ ମନ୍ଦ, ଦୋଳେ ଶିଖୀ ଶିଖା ଶିରେ
ବନଫୁଲ ସୁଗନ୍ଧ ପରଶି ଯମୁନା ନୀରେ
ସ୍ୱଚ୍ଛ ଚନ୍ଦନ ଚର୍ଚ୍ଚିତ ଚନ୍ଦ୍ରାନନେ
ରୁଚିର ରୋଚନା ବିନ୍ଦୁ କଳଙ୍କ ଛଳେ
ବ୍ରଜ କାମିନୀ କାମ ସୁଠାମ ଭୁଲେ
ରସସାଗର ସାଜେ କଦମ୍ବ ମୂଳେ । ୨ ।

—*—

( ୩ )

ହେ ବିରାଟ, ହେ ମହାନ୍, ନିଖିଳ ଭବ
ମହିମା ତବ ଗାଏ,
ଚକିତ ଜନ, କୋଟି ନୟନେ ଧ୍ୟାନ ରୂପ ସ୍ପୃହେଁ । ୦ ।
ଅରୂପ ଛବି ତବ ସରୂପ-ଜୀବ ତଳେ ଫୁଟେ,
ନୀଳ ଆକାଶ, ରବି ଶଶୀ ପ୍ରକାଶ ଫୁଲ ଫୁଟେ;
ଅମଳ ତବ ଚରଣ ତଳେ
ଜଗତ ନତି ଧ୍ୟାଏ,
ପ୍ରଣତ ଜୀବ ଶାନ୍ତି ସୁଧା ପାଏ । ୧ ।

—○—

( ୪ )

ଭଜରେ ମନ, ସଜ ସରସିଜ ଚରଣ
ଗଜ ନସ୍ତାରଣ ଭୁଜ, ମୋହନ ବରଜ ଧନ । ୦ ।
ଲାଜରଖା ଦ୍ରୌପଦୀର—ହେଜ ରେ ମନ ପାମର
ସଜହେଲେ ସାରଥୀର—
ସାଜ ପିନ୍ଧି ପୀତାମ୍ବର
ଆଜନମ ପାପ-ଦହନ । ୧ ।
ଗୁଞ୍ଜ-ମାଳିଆ ନାଗର, କୁଞ୍ଜବନ ପ୍ରୀତିଶ୍ବେର
କଞ୍ଜ-ନୟନା ସଧାର
ଗଞ୍ଜ ଗରବ ଆବୁର
ଅଞ୍ଜନ-ନନ୍ଦନ ବରନ । ୨ ।



( ୫ )

ପ୍ରଭୁ ଜଗଦୀଶ୍ୱର !
ଦୁଃଖ ଦଳନେ ଦଳିତ ଧରଣୀ
ନ ଦିଶେ ନୟନେ କାହିଁ ତ ସରଣୀ
ଆଖି ଆଗେ ଟଳେ ରତନ ଆସନ
ଆର ଅବା ତୁମେ ମାର,
ନାହିଁ ନାହିଁ କେହି ଭରସା ଏ କାଳେ,
ଶରଣ ଲୋଡ଼ିବି ଯାର । ୧ ।
ସୁଖର ଦି'ଦିନ ଯାଇଛି ଉଭାଇ
ସପନ ପରଶ ପାଇ,

ମଣାଣି ହେଲାଣି ସଜଫୁଲ ବନ
ଡୋଜଲ ଶବଦ ନାହିଁ;
କାହିଁ ଯିବ କାହିଁ ରହିବ, ମୋହର
ସାର ଯିନା ଲ ହଧାର । ୨ ।

—*—

( ୭ )

ହୋନ ମୋ ମିନତି ମୁରାର ! ମାନ ମୋ ମିନତି;
ମାରହିବ ତର ମୋ ନୟନରେ, ତୁ
ଚପଳା;—ନବଘନ ସାଥୀ । ୦ ।
ଫୁଲ ଫୁଟେ ଉପବନ, ବନ ମହକେ ମଧୁକର ସଙ୍ଗ ମିଳାଇ
ଋତୁବସନ୍ତ ସୁଗନ୍ଧ ସମୀରେ କୋଇଲ କଣ୍ଠ ଶୁଣାଇ,
ଦିନରାତି ତୁ ପ୍ରେମେ ଭୁଲାଇ, ମୋହିନୀ ମାୟା ପାତି । ୧ ।
ନଦୀ, ଗିରି, ସାଗର କାହିଁ ରହୁ ତୁ କହ ନାଗର-ପରଦେଶୀ,
କୁଞ୍ଜ-ଭବନ ମୁଁ ସାଜ ସଜାଇ ତୋ ପଦ କମଳ ପିଆସୀ,
ନୟନ ନୀରେ ମୋର ବାସ କୁସୁମ ଧୋଇ
ମନ ଆସନ ଅଛୁ ପାତି । ୨ ।

—୦—

( ୮ )

ଗୌରିତନୁ ଗିରିଜା ସୁତ ସୁନ୍ଦର
ଗଣପତି ହେ ତମହାରୀ !
ସ୍ଥୂଳ କଳେବର ଜୟ ଲମ୍ବୋଦର
ନଖିଳ ଭୁବନ ହିତକାରୀ । ୦ ।

ଚନ୍ଦନବନ୍ଦୁ ବିସ୍ତଜିତ ଭାଲେ
ମୁକୁଟ ବିମଣ୍ଡିତ କଣ୍ଣକପାଲେ,
ଦେବ, ନାଗ, ନର, କିନ୍ନର ବନ୍ଦନ
କୁନ୍ଦ-ଧବଳ ତନୁଧାରୀ । ୧ ।
ସୁରପୁର ପଣ୍ଡିତ, ସେବିତ ଆଦ୍ୟେ
ତ୍ରିଜଗତ ପୂଜିତ ଧୂପ, ଦୀପ, ପାଦ୍ୟେ
ବିଘ୍ନହାରୀ ! କରୁଣା କର ହେ ଦେବ,
ଜୟ ଜୟ ମୂଷିକ-ବିହାରୀ । ୨ ।
ଚନ୍ଦ୍ରମୌଳି-ତନୁଭବ ଗଣନାଥ !
ଚରଣ ତଳେ ନୁଆଁଉଛି ମାଥ,
ଜ୍ଞାନ ବୁଦ୍ଧି ଦିଅ ହେ, ଅଘ-ନାଶନ
ଅନୁଗତେ କୃପା ବିସାରି । ୩ ।

—*—

( ୮ )

ମନା ନ ମାନିଲେ ମୋର,
ଏଥର ଦେବତା ଛାଡ଼ିବି ନାହିଁ ତ
ଚରଣ ଦୁଇଟି ତୋର । ୦ ।
ଏ ଚରଣ ବେନି ବୁଲ ଗଲ ବୁଲି
ମଥୁରାକୁ ପରା ଦିନେ,
ବରଜ ଗୁଆଳୀ ବିଶୋଷି ସରଳ
ଝୁରିମଲେ ଅନୁଦିନେ;

ଚପଳ ଏ ଦୁଇ ପାଦ – ମନେ ଅଛି ବଡ଼ ସାଧ,
ବାନ୍ଧି ରଖିବି ମୁଁ ପଥର ଠାକୁର
ସଜାଡ଼ି କୁସୁମ ଡୋର । ୧ ।
ଜାଣି ମୁଁ ନ ଥିଲି ଆଖି ଠାରେ ସତେ
ଏଡ଼କ ଶରଧା ବୋଲି,
ଯମୁନା ବଦଳେ, ଯମୁନା ଗଢ଼ିବି
ଏଥିର ମୁଁ କଥା ଦେଲି,
ଭସାଇବୁ ସୁଖେ ନାଆ, ଉତ୍ତରୀ ବହିଲେ ବାଆ,
କଳା ମେଘ କୋଳେ ରଚୁଥିବ ଯେବେ
ଚଢ଼କ ବିଜୁଳି ଖେଳ । ୨ ।
କବିଚନ୍ଦ୍ର କହେ-ପାଦ ଛୁଇଁ ତୋର
ନିୟମ କରୁଛି ମୁହିଁ,
ତୁ ଯେ ଶିଖାଇଛୁ ଅଭିମାନ ମୋତେ
ମନ୍ଦିର ପାଷୋଣ ନାହିଁ,
ତୁଷିବି ସତରେ ନ ପଶୁରୁ ଯେବେ
ଜୀବନର ପଣ ମୋର । ୩ ।



( ୯ )

ଲୋକେ କହୁଥାନ୍ତି ଦୟାନିଧି ତୁମେ
ମୋହର ପାଇଁକି ପଥର ହେଲ,
ସବୁ ଦେଖ, ସବୁ ଶୁଣ ବୋଲି, ଶୁଣେ
ମୋହର ପାଇଁକି ସବୁ ମୁଦିଲ ? । ୦ ।

ନରଖ ଜନର ଅଛୁ ବୋଲି ଠାଇଁ,
ତୁମ ପାଦତଳେ ଆସିଥିଲି ଧାଇଁ,
ବୁଝିଲି ଦେବତା, ମୋହୋପାଇଁ ଏକା
ଖାଲି ଏ ମିଛ ମନ୍ଦର
ସୁଅ ମୁହେଁ କେତେ ବାଲି ବନ୍ଧ ଦେଇ
ସମ୍ଭାଳି ପାରିବ ବୋଲି ? । ୧ ।
ଲୁହାଗୁନ୍ତି ପରେ ଉହାପସା ଦାଉ
ସତେ ହେ ଠାକୁର, ସହ୍ୟ ନୋହେ ଆଉ
ଦେଲ ଯେବେ ଜୀବ, ଜୀବେ ଥାଉଁ ଥାଉଁ
କଲ ଖାଲି କଲବଲ,
କବିଚନ୍ଦ୍ର ବୋଲେ—ଦୀନବନ୍ଧୁ ନାମେ
କାଳି ସିନା ବୋଳି ଦେଲ । ୨ ।



( ୧୦ )

## ନୀର ଝରେ

ଝନସ୍ତି ନୟନରୁ ମୋ,···ନୀର ଝରେ । ୦ ।
ଘେରି ଘନ ଆସେ, ଜୀବନ ଆକାଶେ
ନାହିଁ ସାହା ପାଶେ, ରଖେ କେ' ସେ
ଶ୍ୟାମ ବିନା କେ ଦୁଃଖ ହରେ;
ବହେ ଖରଧାର—ନାଆ ଝଶହର,
ଲୁଚେ ଶଶୀ ତାର—(ଝୁରି) ହେଲା ସାର
ନାହିଁ ନାଉରୀ ନଦୀ ଧାରେ । ୧ ।

କଳକଣ୍ଠ ଗୁଞ୍ଜେ — ନୂପୁର ନିକ୍ୱଣେ
ତବ ପଥ ଚାହିଁ ଜାଗି ଜଗି ବସେ
(ଅରେ) ଆସ ମୋର କୁଟୀର ଦୁଆରେ । ୨ ।



( ୧୧ )

ବିଘ୍ନ ହର ହର-ନନ୍ଦନ ଗଜାନନ !
ମୂଷିକ ବାହନ ଦୁରିତ ନାଶନ । ୦ ।
ଲମ୍ବୋଦର ଗୌରୀ ମୋଦ ବର୍ଦ୍ଧନ
ଦେବଗଣ ଅଧିନାୟକ ଜୟ ହେ,
ନାଗ ନର ମୁନି ବନ୍ଦନ । ୧ ।
ପ୍ରଣତ ପାଳକ ବେଦ ବିଧାୟକ
ଗଙ୍ଗାଧର-ଗିରିଜା ସୁଖ ଦାୟକ
ଚରଣ କମଳ ନିରତ ବନ୍ଦେ
ଯେନ ଭକତ ଫୁଲ୍ଲ ବଦନ ।



( ୧୨ )

ମନ ବୁଝିବାକୁ ସିନା, ଦୁଃଖ ସହି,
ଦୁଃଖ ଡାକିଆଣେ ନିତି,
ମିଛ ସବୁ କଳପନା ।। ୦ ।।
'ଦେବତା ଗୋ, କହ କଥା'
ବାଆକୁ ସିନା ଏ ବତା;
ବଧୀର ମୂକକୁ ଡାକ ଥକାଇ ମୁଁ
ଧଇର୍ଯ୍ୟ ହେଲାଣି ଚୂନା । ୧ ।

ପାଞ୍ଚଥିଲି ଖରା ହେବ କାଲି,
ଆଖିରେ ତ ଭରି ଦେଲ ବାଲି ।
ଅନ୍ଧ କରି ଶେଷେ ବସାଇ ଦେଲ ତ
ନିତି ଭଜିବାର ଫଳ ସିନା । ୨ ।

—o—

( ୧୩ )

କି ଅପରାଧେ ମୁଁ ଅପରାଧୀ ସତେ
ମୂକ ହେଲ ତୁମେ ଦେବତା !
ପଥର ଦେଉଳେ ନଥର ହେଲ ତ
ନ ଶୁଭେ କି ସତେ ମୋ କଥା ? ॥୦॥
ଧନ-ଜନ ବନ୍ଧୁ ତୁମେ ପରା,
ସୁଖ ଲାଗୁଛି କି ଲୁହ ଝରା ?
ମୂକ ହେଲ ମୁଖ, ଆଖି କାନ ଥିଲି,
ପଥର ପାଲଟି ଗଲା ତା ? ॥୧॥
ଲୁହା-ଛୁରି ପରେ ଉହାପଣା
କେତେ ସମ୍ଭବ ଏ ଲୋକହସା ?
ଆଉ କେତେ ସରି ହେଲେ ସତେ ହରି !
ସୁଖୀ ହେବ ତମେ କହ ତା ॥୨॥
ଜଳି ଥାଇ ନିତି ମରିବାର, ମରମରେ ଚିତା ଜଳିବାର;
ଏ କେଉଁ ବେପାର, ଏ ବିଧି କାହାର
କହିଦିଅ ଥରେ ବିଧାତା ! ॥୩॥

—o—

( ୧୪ )

ହେ ଦେବତା ! କହ କଥା, କହ କଥା –
ଜୀବନ ଥାଉଁ, ଜୀବନେ ଜଳାନା ଜାଳ ଏତା ।୧।
ଦୁଃଖୀର ଦୁଃଖହର ତୁ ଦୀନର ଧନସର ତୁ –
ଅନ୍ତର ଜାଣୁ ଯର ତୁ—
ଯେ କହେ ମିଛ କରେ ତା ? ।୨।
ପଥର ଦେଉଳେ ଥାଇ, ପାଲଟି ନଥାର ପାଇଁ
ଏଥର ମୂକ ମୋ ପାଇଁ
ସତେ କି ହେଲୁ ବଧାତା ? ।୩।

—*—

( ୧୫ )

ତିରୁରେ କଣଛ ଚନ୍ଦନ ତୁମେ
ବନ୍ଦନ ମୋ ଯେନ...
ଅଭିନନ୍ଦନ ଯେନ ॥୦॥
ସାଗ୍ନ ଫୁଲ ସଞ୍ଜ, ଠାକ ବସିଛୁ ମୁଁ
ଚନ୍ଦ୍ରଉଦଆ ଜାଳ,
ତାଗ ଫୁଲ ଥାଳ, ସାଜ ରଖିଛୁ ମୁ
ବ୍ରଜମଲ୍ଲିକା ମାଳ;
ଅଳିରେ ଡାକଛୁ, ଗାଇବ ଗୀତ ଗୋ
ତୁମ ଲଗି ପ୍ରିୟତମ,
ଭବ ବୃନ୍ଦ ନଷ୍ଟି ଜାଗି ପୂଜାଇବ
ପାସୋଶ ଦେଇଛୁ ଧୂମ ,

ବୁକୁ ଭରି ନବ କମଳ ଫୁଟାଇ
ରଚାଇଅ ନନ୍ଦନ···
ଅଭିନନ୍ଦନ ଘେନ ।୧।



( ୧୬ )

ବାଙ୍କ ନୟନ ମନ ଆଜ-ସଜନୀ ମୋହେ···
ସଖୀ ଶିଖୀଚୂଳିଆ, ମୋହନ ମୂରଲିଆ
ନାଗର ନଟବର ରାଜ ।୦।
ସେ ଯେ ପୀତପଟିଆ—ଅତି ନଟକୁଟିଆ
ମାରନ୍ତି ଗୋପୀ ମନ ଲାଜ ।୧।
ସପ୍ତ-ମତ-ହରା ବେଣୁ କୁଞ୍ଜେ ନିତି ବାଜେ,
ଘର ଭୁଲି ପର ବଧୂ ଧର୍ଷ ବେଶ ସାଜେ;
ବନ କୋଣେ ବାଜେ ପୁଣି ମନ କୋଣେ ବାଜେ,
ନୟନ ମୁଦିଲେ କମ ଛବିଟି ବିରାଜେ;
ନଟବର ହଟିଆ—ଶଠ ଧୂର୍ତ୍ତ ନଟିଆ
କଳଶୀର ଶିର ତାଜ ।



( ୧୭ )

ସଙ୍ଗିନୀ, ତୁ ଯେ ନଟବର ପ୍ରେମ ପିଆସୀ,
ଗିରିଧର ନାଗର, ତୋ ମନ ଗଗନର
ଅମଳ ଶରଦ ଶୁଭ ଶଶୀ ।୦।

ତୋ'ର ପ୍ରେମ ରୂପ ନୟନେ ଲେଖି ଗୋ,
ତୋ'ର ବଜେ ପଥ ଚାକ,
ରଜମ ସାରା ତା'ର ବ୍ୟାକୁଳ ଅନ୍ତର
କୁଞ୍ଜବନେ ବାଏ ବଂଶୀ ।୧।
ତାର ବସନ ପୀତ ଧମ ! ତୋର ଅନୁରାଗେ
ରାଧା ଚୂଡ଼ା ଶିର ସାଜେ,
ପ୍ରେମ ତୋର, ତା'ର କଣ୍ଠ ଭୂଷଣ ଗୋ !
ରାଧା ନାମେ ବେଣୁ ବାଜେ;
ତମାଳ ମୂଳେ, ଯମୁନା କୂଳେ, ··· ନିବାସ ତୋର ଲାଗି
ରାଇ, ତୋ' ସ୍ନେହ, ଜନମ ଜନମ ଗୋ
ନାଗରବର ବ୍ରଜବାସୀ ୨।

—o—

( ୧୮ )

**ହେ** ଚିର ସାଥି,···
ଚେତାଇ ମରମେ ରଖ ପ୍ରେମର ବର୍ତ୍ତି ॥୦॥
ଅନ୍ତରେ ଗୋପନେ ରହି ବଜାଅ କି ସୁର,
ନୟନେ ନ ଦେଖି ମୁଁ ତ ବିରହ ବିଧୁର;
ଆଲୋକ ଛାୟାର କୋଳେ ଥାଏ ଧିନ ରାତି
କାନନ ଧାରେ ଅଜଣା କୋଣେ
ବୀଣାରେ ଝଙ୍କାରେ
ତାହାରି ଗାନେ, ବିଭୋର ମୁଁ ଗୋ
ଘୁଲ ସୁମରେ ତା' ଚନ୍ଦ୍ର ଘୋରେ
ବି'ଗୁଣ ଜାଗେ ତବ ରୂପ ଭାତି ॥୧॥

—o—

( ୧୯ )

ଶାରଦା ! ସକଳ ଗୁଣଯୁତା
ଶୁଭଦା, ବନ୍ଦେ ଶ୍ୱେତ-କମଳ-ବାସିନୀ ॥୦॥
ଅମଳ ଧବଳ ବରଣୀ — ସୁଭାଷିଣୀ, ସୁହାସିନୀ, ବାଣୀ,
ଦେବ-ଜନନୀ, ନାରାୟଣୀ । ୧ ।
ବୀଣା ବର-ଦଣ୍ଡ-କରଂ-ଶୋଭନୀ—
ନିଖିଳ-ଗୁଣ-ଖଣି, ସଉଭାଗ୍ୟ ପ୍ରଦାୟିନୀ !
ଜୟ ଜଗତ ଜନନୀ ବାଗ୍‌ବାଦିନୀ ! ॥୨।



( ୨୦ )

କ୍ଷମାକର ଭଗବାନ ! ଦିନେ ମଣୁଥିଲି ଆନ...
ହରି ଯା ନେଇଛ ନୟନ ଦୁଇଟି
ସେ ତୁମ ଅତୁଳ ଦାନ । ୦ ।
ବାହାର ଚକ୍‌ଚକ ଦେଖୁଥିଲି ଖାଲି
ନୟନର ଦୁଇ ତାରା,
କାଣି ତ ନଥିଲି ସତେ ଗୋ ଠାକୁର !
ତୁମ କରଣୀର ଧାରା;
ଭଲ, ଭେଲ ସବୁ ଆଖିରେ ମୋହର
ଦିନ ରାତି ଜୋଉଥିଲା ଉପଦର,
ଡର ତ ନଥିଲା ଅନୁସରିବାକୁ
ତମର ଚରଣ ଚିହ୍ନ ॥ ୧ ॥

ଅନ୍ଧ କରି ତୁମେ ଅନ୍ଧର ଲଉଡ଼ି
ଖଞ୍ଜିଛ ମଧୁସୂଦନ,
ଅନ୍ତର ନୟନେ ଦେଖିଲି, ବୁଝିଲି
ତୁମେ ଏକା ମହାଜନ;
ଶତ-ସାଥୀ-ହରା ଥିଲା ଏ ଜୀବନ
ସତେ ସାଥୀ ଏବେ ଦେଖୁଛି ନୟନ ।। ୨ ।।
ଅନ୍ଧ ନୁହେଁ ଆଜ, ଆଖି ଥିବା ପାଇଁ
ଆତୁର ନୁହେଁ ମୋ ମନ,
ଆଖି ବଦଳରେ ତୁମେ ଦେଲେ ମୋର
ସତେ ତ ଜୀବନ ଧନ ।। ୩ ।।

—o—

( ୨୧ )

ତୁମେ କୋଉଥି ପରା ପ୍ରଭୁ ! ପତିତପାବନ
ଯେ କୁହେ ସେ ହବ, ଉତ୍ତମର ଅକାରଣ । ଠା
କାହିଁ କହ ତାରିଛ ମୋ ପରି ଅଭାଜନ,
ମିଛ ମାନ କାହିଁ ସତେ ତ ହେଲା ସପନ ।। ୧ ।।
କାହିଁ କୋଳ ଥୁଏଁ ପରା
କାଳିଆ ଅପଣନ !
ଜାଣି ନ ଥିଲି, ଜଗତେ ମୋ ପରି ପତିତ
ଜନମ ଲଭିବ ଯେବେ ସାରିବ ମହତ
ସତ କହ ଭଗବାନ ।। ୨ ।।

—*—

( ୨୨ )

ମୋହନ ମାନ, ମାନ, ମାନ
କହୁଛି ମୁଁ କର ପରମାଣ
ବାସି ହେଲା ଝର ଗୁନ୍ଥା ଫୁଲ ହାର
ବୁଡ଼ିଲା ତ ସାରା ଭର ଜହ୍ନ ॥ ୦ ॥
ଘୋଟିଲା ବାଦଲ—ତର ଝଲମଲ
ତରାଇ ତୁ, ସାହା ନାହିଁ ଆନ ॥ ୧ ॥
ଶୁଣିବ ମୁରଲୀ—ଆଣ କର କର
ସର ସିନା ଯାଏ ନଶିହନ ॥ ୨ ॥
କାଳିଆ-ସୁନାରେ—ଆଜ୍ଞେ ତୁ ଅନା ରେ
କହ-ଶଣୀ ଧରେ ତୋ ଚରଣ ॥ ୩ ॥

—o—

( ୨୩ )

ମନୁଆଁ ଭୋଗିବୁ ତ କରମର ଫଳ
କାହିଁପାଇଁ ହେଉ ଏତେ ଉହକ ବିକଳ ॥୦॥
ମନ କରେ ମନ ତୋର ହେବୁ ଦେବରାଜ
ଖଟୁଥିବେ ପଦେ ତୋର ଦେବତା ସମାଜ;
ଗାଦିରେ ବସିବୁ ଖାଲୁ ଗଦାଇବୁ ପାଳ,
ସଢ଼ି ପଚିବାକୁ କହ ଲେଉଡ଼ା କେତେ କାଳ ! ॥୨॥
ଆଉ ପାଖେ ଜଣେ ବସି
ହସୁଛି ଦେଖୁନୁ ?
ଡାକୁଛୁ ଯା, ପାଇବୁ ତା,
କାହିଁକି ଭୁଲୁଛୁ ?

ଝିପିଛୁ ସେ ଗୋଟି ଗୋଟି
ତୋ କରମ ଜାଲ—
ଲଗାଇବୁ କରମଙ୍ଗା
ଫଳବ କ ତାଳ ? ॥ ୨ ॥

—*—

( ୨୪ )

**ମହାଦେବ**···ଜାଗ ଶଙ୍କର !
ଜାଗ ଜାଗ ନଟ ତାଣ୍ଡବ-ପଣ୍ଡିତ
ଜାଗ ଦିଗମ୍ବର ॥ • ॥
ଜାଗ ଉମାପତି ଶ୍ମଶାନବାସୀ
ଜାଗ ଜାଗ ଜଗ-ପାପ ବିନାଶୀ;
ମହା ଯୋଗୀବର, ହେ ପରମେଶ୍ୱର !
ଗଙ୍ଗାଧର ହର ॥ ୧ ॥
କଣ୍ଠେ ଫଣୀ ଫଣା ହାର ବିଲମ୍ବିତ,
ସଦାଶିବ ତନୁ ଭସ୍ମ ବିଲେପିତ;
ଜାଗ ଉମାପତି, ହେ ଅଗତି-ଗତି,
କାମ ବାମ-କର ॥ ୨ ॥

—o—

( ୨୫ )

**ଚିର-ସୁନ୍ଦର !**

ସୁନ୍ଦର, ଚିର-ସୁନ୍ଦର ତୁମେ ସୁନ୍ଦର, ଚିର-ସୁନ୍ଦର;

ତୁମର ଆଗମ ପଥ ଅନାଇଁ ମୁଁ
                    କାଳ ତ ବସିଛୁ ଜାଗର ॥ ୦ ॥

ନବବସନ୍ତ ଆସିଛୁ ଗୋ ପ୍ରିୟ ମଳୟ ସୁବାସ ନେଇ,
ସାରା ରାତ୍ର, ରାତ୍ର ଜାଗି ବସିଛୁ ମୁଁ କୁସୁମ ଶେଯ ସଜାଇ;
କେବେ ଆସିବ ଗୋ ମନ୍ଦରେ ସତେ
                    ମନର ଠାକୁର ମୋର ॥ ୧ ॥

ଅଧା ଗୁନ୍ଥା ହାର ତମର ଆଶାରେ ଅଧାରେ ରହିଛି ପଡ଼ି,
ଅଧା ତ ରହିଛି ଆଖିପତା ତଳ କଳା କଜ୍ଜ୍ୱଳର ଗାର;
ମୁକୁଳା ରଖିଛୁ ମରମ ଦୁଆର
                    ଆଜ ତ ନ ସହେ ଡର ॥ ୨ ॥

ସାଇତ ରଖିଛୁ ଭରା ଝାର ଧାରା ଧୋଇବ ଚରଣ ଦୁଇ,
କୋଟିଏ ସରଗ-ଦେବତା ହାରିଛୁ ଗଙ୍ଗା ଯା ପାରିନାହିଁ;
ଆସିବ, ରସିବ, ତୋଷିବ, ବସିବ
                    କେବେ ଗୋ ନାଗର ବର ॥ ୩ ॥

ଅଧା-ପିନ୍ଧା ମୋର ନୀଳ-ଅଞ୍ଚଳ ଓଳାଇଛୁ ତୁମ ପଥ,
ଅଧା ଖରା, ଅଧା ଛାଇ ତଳେ ତଳେ ଏଇ ଢଣେ ତୁମ ରଥ;
ଅଧା ମୁଦା ଆଖି ତୁମର ପାଇଁ ଗୋ
                    ଘୁମ ପାସୋରିଛୁ ତାର ॥ ୪ ॥



( ୨୭ )

ସୁନ୍ଦର ହେ, ସଇ ମନ ଚୋର
ନାଗର ନନ୍ଦକିଶୋର, ମୁରାରି ।୦।
ମଧୁର ମୁରଲୀଧର, ଅଧର ମନୋହର
ଝୁମେ ଚନ୍ଦ ମା ଶଶିମୁଖ ହେରି ।୧।
ଯମୁନା ତଟ, ବଂଶୀବଟ ନଟ ପଟ, ପୀତ କପଟ ଶ୍ୟାମ,
ଗୋପୀ ମନୋହାରୀ କୋଟି କାମ-ଗଞ୍ଜନ ସୁଠାମ,
ଅଭୟ ଚରଣେ ସ୍ଥାନ ଦିଅ ହେ
ବରଜ-ବନବିହାରୀ
ନନ୍ଦିତ କରି ନନ୍ଦିତ ହିଆ
ଘନବରନ ! ଶୁଣ ଗୁହାରି ।



( ୨୭ )

ନମୋ, ନମୋ, ନମୋ,
ଅମଳ କମଳ ବାସିନୀ,
ନାରାୟଣ ମନ-ମୋହିନୀ
ନିଖିଳ ବେଦ ଜନନୀ
ବୀଣା କର ଦଣ୍ଡ ସତତ
ଶୁଭ୍ର ଶ୍ରୀକର ଶୋଭିନୀ
ଜ୍ଞାନ ବୁଦ୍ଧି ଦାୟିନୀ, ସୁହାସିନୀ
ଜଡ଼ତା ତମ ବାରିଣୀ ।୧।



( ୨୮ )

ବନ୍ଦେ ପଦଯୁଗ  ଅମଳ ଶତଦଳ—
ନନ୍ଦ, ବାଣୀ  ବରାନନା !
ବୀଣା ପୁସ୍ତକ—  ଶୋଭି ବର-କର
ବିଶ୍ୱବୁଦ୍ଧି-ପ୍ରଦାୟିନୀ ॥୦॥
ତିମିର ନାଶିନୀ  ଧବଳ ବରନା
ଦେବ-ନର-ମୁନି କରେ ବନ୍ଦନା
ବିତର ଜନନୀ,  ସତତ କରୁଣା
ଗୀତ-ବାଦ୍ୟ-ପ୍ରମୋଦିନୀ ॥୧॥

—✳—

( ୨୯ )

ଭଗବତି ! ଅନ୍ଧ-ତିମିର ବିନାଶିନୀ
ନମୋ ନମୋ ଜନନୀ ।୦।
ଶ୍ୱେତ ଶତଦଳ ବାସିନୀ, ସୁଭାଷିଣୀ,
ହାସ-କୁସୁମ ସୁହାସିନୀ,
ବୀଣା-ପୁସ୍ତକ-ଧାରଣୀ ।୧।
ଶୁଭଦା, ବରଦା, ଶାରଦା—
ଭକ୍ତ ମାନସ-ରଞ୍ଜିଣୀ
ପ୍ରଣତ-ଜନ କଲ୍ୟାଣ-ଦାୟିନୀ ।୨।

—o—

( ୩୦ )

ଦୁଃଖ ନାଶିନୀ ଗୋ, ଯୁଗେ ଯୁଗେ ତୁ ମୋ ସାହା,
ତୋ ବିନେ କେ ଅଛୁ ଶକ୍ତିମୟୀ, ଆଉ
ଜୀବନରେ କରବ ଆହା । ୦ ।
ଅସୁର ନାଶିନୀ ! ଶରଣାଗତରେ
କରୁଣା କର ତୁ ଅବତରୁ,
ସନ୍ତାନ ଦୁଃଖକୁ ଦୂରେ ଖେଦିବାକୁ
ବାର ବାର ନାନା ରୂପ ଧରୁ;
କେବେ ନର ମୁଣ୍ଡ, କେବେ ଶତଦଳ
କେବେ ନାଗଫଣା ଶୋଭୁଥାଇ ଗଳ
କେବେ ଦଶଭୁଜା, କେବେ ଅବା ପୁଣି
ହୋଇଛେ ତୋର ମା' ଶତବାହୁ । ୧ ।

—*—

( ୩୧ )

ଜାଗ ଜାଗ ଶଙ୍କର ମୋହିନୀ ! ଜାଗ...
କାଳୀ କରାଳିନୀ ନୃମୁଣ୍ଡ-ମାଳିନୀ, ବିପଦ-ବାରଣୀ, ଜାଗ ।୦।
ଜାଗ ଭବାନୀ ଅସୁରଦଳ ନାଶିନୀ,
ଶକ୍ତିପ୍ରଦାୟିନୀ, ଜାଗ
ପ୍ରଣତେ ସେବନ ଗୋ ଦଶଭୁଜା !
ସେବନ ଗୋ ବନ୍ଦନ ପୂଜା
କଲ୍ୟାଣମୟୀ ଶରଣାଗତ ପାଳିନୀ,
ଶତ ଶୁଭ ଦାୟିନୀ, ଜାଗ ।୧।



( ୩୨ )

ବନ୍ଦେ ଅଖିଳ ଜନ ମଙ୍ଗଳା···
ଦଶ ପ୍ରହରଣ ଧାରଣୀ,
ଜଗତ ଦୁଃଖ ବାରଣୀ,
ସତତ ହିତ-କାରଣୀ ଗିରିରାଜ ବଳା ॥୦॥
ଅସୁର ଦଳ ସଂହାରଣୀ କାତ୍ୟାୟନୀ
ଖଡ୍‌ଗ ଖର୍ପର ଶୂଳ ଧାରଣୀ,
ଭକ୍ତ ମାନସ ରଞ୍ଜଣୀ,
ବନ୍ଦେ ସରସିଜ-ଚରଣ ଯୁଗଳେ
ପ୍ରଣତ ଜନ ପ୍ରତିପାଳନୀ, କମଳା ॥୧॥

—o—

( ୩୩ )

ଜୟ ଜଗତ ଜନନୀ ଯୋଗମାୟା, ଚଣ୍ଡିକେ ॥୦॥
ଅଭୟ ଚରଣେ ଶରଣ ରଖ ମା,
ଅସୁର ପୀଡ଼ନେ ବ୍ୟଥା ନିରେଖ ମା
ତୋ ବିନେ ଭୁବନ ଆଜ ନିରକ୍ଷ ମା,
କରୁଣା କର ଦେବୀ ଅମ୍ବିକେ ।୧।
ତୋ ବିନେ ନାହିଁ ତ ଗତି ମୁକତି ମା,
ତିନି ଜଗତର ତୁହି ଶକତି ମା,
ତ୍ରିନୟନୀ ତୁହି ଜଗତଧାତ୍ରୀ ମା,
ଅସୁର ଦର ହର, କାଳିକେ ।୨।

—o—

( ୩୪ )

ବଂଶୀ କେ ବଜାଏ ଫୁଲ ବାଣ ପାରେ
ଚଳଚଞ୍ଚଳ ଜଳ ଯମୁନା ଟଳମଳ
ନାଚେ ତରଙ୍ଗ ସେ ସୁରେ ॥୦॥
ସରସ ଶରଦ-ଶଶୀ କିରଣ ବିଥାରେ
ଘନମାଳ ନବ ନଭ କୋଳେ,
ମଳୟଜ ଶୀତଳ- ବାହ୍ନି-ପରିମଳ
ଜଗଜନ ମତ୍ତ ନୃତ୍ତ ଘାରେ ।୧।
ତନୁ ମନ କଣିକନ ସେ ସୁର ଆଶାସ୍ତ୍ରୀ
ଅରୂପ ସରୂପ କିବା ସେ ରେ !
ଅଚହ୍ନା ଅଜଣା ପର ଉଦ୍ଦେ ଚିର ଦୂରେ
ଅଦେଖା ସେ ସପନ ଦୁଆରେ;
ଘୋର ଚନ୍ଦନ, ବର ବନ୍ଦନ କରେଁ ଗୋ
ନନ୍ଦନବନ ଫୁଲ ହାରେ ।୨।



( ୩୫ )

ଲୁଷିଛୁ କି ମା, ଶଙ୍କରୀ !
ଲୁଷାଇଲା କେ କି କରି ? ॥୦॥
ଫିଟିଚ ପ୍ରଳମ୍ବ, କେଶ—
ଅଯତନ ବେଶ ବାସ,
ଜବା ଠେଜ ଆଜ କପାଁ-
ଗଳେ ତୋର ମୁଣ୍ଡମାଳ ।୦।

ବଦନେ କାଳିମା ଘୁଞ୍ଚ
କାହିଁ ସେ ସରାଗ ନାହିଁ,
ଚନ୍ଦ୍ର ତ ନ ହୁଏ ତୋତେ
ଭୁଞ୍ଜି ମା ଗଉରୀ ବୋଲି ।୧।
ଡର ଲାଗେ ଦେଖି ତୋତେ
ବଗୁଭୟୁ ତେଜ ସତେ,
ଏ କ ମା ପ୍ରଳୟୁ ଖେଳେ
ମାତିଛୁ ଗୋ ଦିଗମ୍ବରୀ ।୨।
ଖେଳା ହର ଗଙ୍ଗା ଭୁଲେ
ମାତ କ ଏ ଦୁଃଖ ଦେଲେ ?
ଅନାଁ ମା ତୋ ପାଦତଳେ
ଆଣିଛୁ ମୁଁ ଶିବେ ଧରି ।୩।

—*—

( ୩୬ )

ସାବେରୀ-ଏକତାଳୀ

ଗଙ୍ଗାଧର ହର ହେ
ଚନ୍ଦ୍ର ମଉଳି, ଭୂତପତି
ଡମ୍ବରୁ ଧର—କର । • ।
ଗଳପର ନାଗଫଣା, ଦିଗମ୍ବର
ସେବିତ ସୁର-ନର
ଶମ୍ଭୁ, ଉମାବର, କାମ ବାମକର,
[ ପଦ ]
ବନ୍ଦେ, ଜଗଜନ ସରସିଜ ଚରଣେ
ଗିରିଜା ବରଦ ଶଙ୍କର ହେ,

ଭୂତ ସଙ୍ଗେ କର ରଙ୍ଗ ମନୋହର
ଡିମକ ଡିମକ ନାଦେ—ନଟନ ଚପଳ ଛନ୍ଦେ ।
ଜୟ ଜଗଦୀଶ୍ୱର ।୧।



( ୩୭ )

ସାବେରୀ—ଏକତାଳୀ
[ ଚତୁରଙ୍ଗ-ପ୍ରବନ୍ଧ ]

ତ୍ୟାଗ ରାଜ ଶମ୍ଭୋ ! କାମହର
ଭାଲ-ଚନ୍ଦ୍ର ଗିରିଜା ବର ଶଙ୍କର ।୦।
ବିଭୂତି ଅଙ୍ଗେ ସାଜେ
ଶିରେ ଗଙ୍ଗା ବିରାଜେ
ସ୍କରେ ଡମ୍ବୁରୁ ବାଜେ ରେ;—
ତା ନାନା ନାନା ତୁମ୍ ତାନା ନାନା ନାନା
ରେ ମାପା ଧାମା ପା ଧାରେ ସା ନିଧାପା,
ସା ରେ ମା ଗାରେସା ଧାସା ନିଧାପା ମାପା
କର ଡମ୍ବରୁ ଘନ ଜକୁଟ ଫୁଙ୍କାରେ,
ତାକ୍ ଧ୍ରୁମିକିଟା ତାକ୍ ଝେଣାମ୍—
କଡ଼୍ତା, ଧାଗେ ଗଢ଼ଘିନା ଧା ।
ଧାଗେ ନାଗେ ତେଟେ ଗଢ଼ଘନ ଧାଗେ କତା ନଧୋଆନେ,
ଧାଗେ ନାଗେ ତେଟେ କତା ଗଢ଼ଘନ ଧାଗେ ନଧାଆନେ;
ଧାଗେ ନାଗେ ତେଟେକତା ଗଢ଼ଘନେ
କେଉ୍ ଧା'ନ୍ ନେଧା, କେଉ୍ ଧା'ନେ ଧାକେଉ୍ ଧାନେ— ।୧।



( ୩୮ )

ଗୃହାଁ ଗୃହାଁ, ନୟନ-ଗୃହୁ ବଂଶୀ ବଦନ ॥ ୦ ॥
କାଳିୟ-ଗର-ଦର ଭଞ୍ଜନ
କାମିନୀ-ଜନ-ମନ ରଞ୍ଜନ
କାନ୍ତ, ନବଘନ-ଗଞ୍ଜନ,
ମୋହନ, ଶୋଭନ, ଚନ୍ଦନ-ମଣ୍ଡିତ, ବର-ଚନ୍ଦ୍ରାନନ ।୧।
ଜଗ ବନ୍ଦନ, ସୁତ ନନ୍ଦର
ନବ କଦମ୍ବ ବନ ସୁନ୍ଦର—
ତେଜ, ରଚେ କେତେ ଛନ୍ଦର
ଅପଘନ ଘନ ଘନ କମ୍ପନ, ବହେ ଆକୁଳ ମନ୍ଦ ପବନ ।୨।
କେ ସଖୀ କୁଙ୍କୁମ ଧରି କରେ
କେ ସଖୀ ଚନ୍ଦନର ଲେପନକରେ
କେ ଶ୍ରମର ଆଳଟ ଧରେ
ଲୋଭନ, ଯୁଗ କଞ୍ଜ-ଚରଣ, କବ-ଶଶୀ କରେ ଆଲିଙ୍ଗନ ।୩।

( ୩୯ )

ଶ୍ୟାମ ମଦନ ମୋହନ ଗିରିଧାରୀ
ନଟବର ଚତୁର ମୁରାରୀ ॥୦॥
ସାଇ ଚିତ୍ତଚୋର ସଙ୍ଗ ମତ୍ତ ହରି
ନବନାଗର ବନଚାରୀ ॥୧॥
ପୀତପଟ ନଟକୁଟ ନିପଟ କପଟ ହରି
ଯମୁନା ତଟ ନିକଟ ମୁରଲୀ ଅଧରେ ଧରି
ଆଜ ନବୀନା କିଶୋରୀ ନ ଡାକିବ ବଂଶୀଧାରୀ
ହିନା ଅପରାଧେ ଧନୀ ଅପବାଦେ ଗଲି ସରି ॥୨॥

( ୮୦ )

ମନ ବାଉଳାରେ ! ତୁ ଭଙ୍ଗା ଘରର କୁଣିଆଁ
କେତେ ଧନକୁ ଚୋର, ଏ କଡ଼ମା ଘରର
କହିଲୁ କେ କାହାର, କଏ ଖାଇ ପିଇବ,
ସଭିଏଁ ସାଥୀ ଦୁଇଦିନିଆଁ ॥୧॥
ଛନ୍ଦ କପଟ ମାୟା — ଗଢ଼ା ଏ ତୋର କାୟା
ଜାଣୁ ଜାଣୁ ତୁ ବାୟା ହେଲୁ ସବୁ ତ ଛାୟା
ଭାଙ୍ଗିଯିବ ତୋ ଟାଣ ପଣିଆ ॥୨॥
ସତକୁ ସାର କରି, ଗୟାଳ ମନୁ ଛାଡ଼
ସଙ୍ଗାଳ ସେହ୍ନ ଚୋର, ଭବସାଗରୁ ତର
ଆଉ ସବୁ ଅଗାଡ଼ି କଣିଆଁ ॥୩॥

—*—

( ୮୧ )

ବରଜ ନାଗର ମୋହନ ! ଘନଶ୍ୟାମ ହେ,
ନବନୀତ ଚୋର ହରି    ଅଧରେ ମୁରଲୀ ଧରି
ରଟଥାଅ ରାଧା ରାଧା ନାମ, ଘନଶ୍ୟାମ ହେ···।ଘ।
ନଟ-ପଟଳି-ମୁକୁଟ ଧୀଟସଟ ନଦସ୍ୱଟ
ଜପଟ କପଟ କମ-ଠାଟ,
ଶ୍ୱସ୍ତ ଚନ୍ଦ୍ରିକା ଚୂଳିଆ - ଶର ପୀତ ଦୁକୂଳିଆ
ରୂପ ଜଣେ ପଦ୍ମ କୋଟି କାମ ହେ ।୧।
ଶ୍ରବଣର କୋଳଖିଆ—ଗୋପୀ ପରମାଦକୀଆ
ସ୍ୱଭ ଭଜେ ତବ ଚନେ ଷ୍ଟାମ
ଜଗତଶୀ ଶେଷକାଳେ — ଶରଣ ଚରଣ ତଳେ
ଜ ଦାଶ ମାଗୁଛି ଶୁଣିଧାମ ହେ ।୨।

( ୪୨ )

ତୁମେ ସୁନ୍ଦର, ତୁମେ ରୁଦ୍ର
ତୁମେ ଚପଳ, ଶୀତଳ ତୁମେ ॥୦॥
ଚପଳାର ତୁମେ ଚଞ୍ଚଳ ଛଟକ
ବଜ୍ରରେ ତୁମେ ଘୋଷ,
ସାଗରର ତୁମେ ଊର୍ମୀ କଗ୍ଧଳ
ନଦୀ ମାରେ ହର ଶୋଷ
ତୁମେ ମହାନ, ତୁମେ ଗୋ ଧୀନ
ଜନମ ମରଣ ଏକା କରିଦଅ-
ଏ ମର ମରତ ଭୂମେ ।୧।

—୦—

( ୪୩ )

ଜନନୀ ଜୟ ଜୟ, ସକଳ ସୁଖମୟ
ସଦା ମଙ୍ଗଳ କାରିଣୀ
ଖଡ୍ଗ ଖର୍ପର ଶୂଳ ଧାରିଣୀ
ହର-ହୃଦୟ-ପର ଚାରିଣୀ । ୦ ।
ଦେବ ନାଗ କୃପା-ପ୍ରଦାୟିନୀ
ଶମ୍ଭୁ ମାନସ-ହାରିଣୀ
କର ଦୟା ଧାନେ, ସିଂହ ବାହିନୀ !
ଅସୁର ଦଳ ବଳ ନାଶିନୀ ।୧।
ଶକ୍ତି, ମୁକ୍ତି ସୁଧା-ବିଧାୟିନୀ
ଜୟ ତୁ ଗିରିବର ନନ୍ଦନୀ
କାଳିକେ, ନରମୁଣ୍ଡ ମାଳିକେ !
ଚଣ୍ଡୀକେ, ହର-ମୋହିନୀ ।୨।

ଭକ୍ତଜନ ସନ୍ତାନ-ତାରିଣୀ,
ଦୀନବନ୍ଧୁ ତବ ଜନ-ପାଳିନୀ,
ଚରଣ ତଳେ ତବ, ତର ନଶିଲ ଭବ
ପ୍ରଣନ୍ତ ଦେବନ, ଜଗ-ବନ୍ଦନୀ ।୩।



( ୪୮ )

ମନୁଆଁ ! ତୋଳିଲୁ ତ ନୂଆ ଘର ତୋର
ସାଇତି ରଖିଲୁ ଆଣି ନାନା ଉପଚାର ॥୦॥
ଦୁନିଆଁ ନାଆଁ ଯାହାର ଦୁଇ ପାଖେ ନିଆଁ,
ନୁହେଁ ସେ ନବାତ ପଣା ନୁହେ ଗୁଡ଼ ମୁଆଁ ।
ଏପଟେ ସେପଟେ କଣ୍ଟା କରତର ଧାର ରେ ॥୧॥
ମନ୍ତ୍ର ବୁଝି ମନକଲେ, ମନ୍ତ୍ରମାନ୍ତ୍ରି ମାର
ମୁହଁ ମୁନ୍ଧ ବସ, ଯେବେ ନାହୁଡ଼କୁ ଓର
ଝିଙ୍କୁ ଉଠିଲେ, ବୁଲ ଅବ ବେଙ୍ଗପର ରେ ॥୨॥
ନବୁଏ ଜଣେ କେ ବସି ଧଣ କାଗ ଜୋର
ହସିବୁ କାନ୍ଦିବୁ ବାବୁ ! ନାହିଁ ବୁଝ ତୋର
ଲୁହାରେ ବନାଇ ଘ୍ରାଣ ଆଗେ ବଡ଼ି ବୁଲ ରେ ॥୩॥
ଝସ ତସ ସନ୍ଧି ଭରୁ ବୁଲାଥାଏ ବଡ଼ି
ବାଧା ନ ମାନ ତୁ ବୁଲ ଦୁନିଆଁ ସଜାଡ଼ି
ଆସୁ ବୃନ୍ଦ-ଗଣ୍ଡ ଅବା ଭୁଆଁସ ଅନ୍ଧାର ରେ ॥୪॥



( ୪୫ )

ମୁରଲୀଧର ଶ୍ୟାମ ଜୀବନ ଧନ ମୋର ॥ ୦ ॥
ନଟବର ସୁନ୍ଦର, ଗିରିଧର ନାଗର
ଗଳେ ଦୋଳେ ବନଫୁଲ ହାର
ଯମୁନା କୂଳଆ ସେ ଯେ—ନିତି ସଙ୍ଗୀମନ୍ତ ହେଜେ
ହେଉ ପଶ ବାଙ୍କ ଚୂଳ ଡାଉ ।୧ ।
ବଜାଇ ମୋହନ ବେଣୁ—ରାଧା ରାଧା ଗାଏ କାହ୍ନୁ
ପଦେ ଶୋଭେ କନକ ନୂପୁର
ଶିରେ ଶିଖଣ୍ଡ ମୁକୁଟ—ପୀତପଟ ନଟବଟ
ବରଜ କିଶୋରୀ ମନଚୋର
ନିଖିଳ ଜନ ବନ୍ଦନ ଛନ୍ଦ ନିନ୍ଦେ ନବଘନ
ଶଙ୍କର କମଳ ପଦ ଯାର
ଅଗତିଗତି କାରଣ ଜଗ୍ଧ ବିପଦ ବାରଣ
କହିଣଶୀ କଣାଏ ଜୁହାର ।୨।



[ ୪୬ ]

ନାଗର, ନାଚ ନିତି ମୋର ନୟନେ ।୦।
ଯେବେ ଘନ ଘେରିଆସେ ଜଗତରେ
ତରୁ, ତଳ ତେଜ ଭୁଏ ପବନରେ
ବାଜ ଗରଜଇ—ମୁରଲୀ ବଜାଇ
ବଜୁ ନୂପୁର ଭରି ଚରଣେ ।୧।

ଯେବେ ମଧୁମାସ ଆସେ ଜୀବନରେ
ଶୁଭଶଣୀ ଘଜେ ସଞ୍ଜ ଲଗନରେ
ରସ ବାସ ମେଲ ଝୁରେ ବଣ ମଲ୍ଲୀ
କୁଞ୍ଜ ଦଲ-ତଳପ ଶଯ୍ୟନେ ।୨।
ଯେବେ ଶୀତ ଆସେ କମ୍ପେ ତନୁସାର
ଆଖି ତାର ଆଗେ ଘନ କୁହୁଘେର
ଅରୂପ ସେ ରୂପ ଆଲୋକ ଘୁପ୍ୟାରେ
ରୂପ ଧର ଖେଳ କହ୍ଵଶଣୀ ଭଣେ ।୩।

– ୦ –

( ୪୭ )

ଶାଖ ପତ୍ରରେ ବଣର ଶୁଆଙ୍କୁ,
ଭଙ୍ଗା ବସା ଦେଇଯିବୁ କାହାକୁ ? ।।୦।।
ଜନମଠା ଖଟି, ଖଞ୍ଜି କୁଟା କଠି
ଡାଳେ ବସାଇଲୁ ଯାହାକୁ,
ପରଦେଶ ଯିବୁ ମୁରୁଛୁ ଇହାକୁ
ସଜେଜ ରେ ଆଜ, ତାହାକୁ ।୧।
ପଚର ଘୁଇରେ, ବାସ ଉଚଥିଲୁ,
ଶୀତ ମେଘ ଖସ ସାହାକୁ,
ଦଣ୍ଡକରେ ଉଡ଼, ଯିବୁ କାହିଁ ଘୁଡ଼
ଫବନେ ଦଲାଇ ବାହାକୁ ।୨।
ଏକା ଯାଉ ଉଡ଼ି, ସାଥୀ କ ନ ଲୋଡ଼ି
ପୁଅ ଝିଅ ବାପ ମାଆଙ୍କୁ
କହଚନ୍ଦ୍ର ବୋଲେ, ଭଉଗଲୁ କରେ
ହାର ଅଣଗ୍ରସ ବାଆଙ୍କୁ ? ।୩।

( ୪୮ )

ମନୁଆଁ ! ଶ୍ୟାମ ନାମ କର ସାର,
ଶ୍ୟାମ ନାମ ଭବତାପ ବିମୋଚନ,
ଗୋପି-ମନ-ଚନ୍ଦନ ଜଗଜନ ବନ୍ଦନ
ଅମଳ ଅମିୟ ମଧୁଧାର ।।୦।।
ଶ୍ୟାମଳ ସୁନ୍ଦର ଚାରୁ କଳେବର
ରାଧା ମାନସଗତ ଚୋର,
କଞ୍ଜ ଚରଣେ କମ ନୂପୁର ମଣ୍ଡିତ
ମୁରଲୀ ଅଧର ଛୁଏଁ ଯାର,
କାଳୀୟ ମର୍ଦ୍ଦନ—ଜୟ ମଧୁସୂଦନ
ନନ୍ଦନ ଛବି କୋଟି ମାର ।୧।
ଶରଣ ଭରଣ ଜନ—ମୁନିଜନ ସୁର-ନର
କଂସ ନିସୂଦନ ! ତୋର
ନାମ ଗାଇ ବନ ଯାଉ ହେ ମୋହନ !
ଜନମ ମରଣ ସାଥୀ ମୋର
ଜୀବନର ସଞ୍ଜେ ତୁଅ ଗିରିଧାରୀ
କବି-ଶଶୀ କଣ୍ଠର ହାର ।୨।

—୦—

( ୪୯ )

ମନ ମୋହନ, ବ୍ରଜ ଚନ୍ଦନ, ଜଗବନ୍ଦନ ଗିରିଧାରୀ
ଅମଳ ଶତଦଳ ନନ୍ଦ ପଦତଳ କୁଞ୍ଜ କାନନ ଚାରୀ ।।୦।।
ହରିଛୁ ବଳେ ତବ ମନ ହେ ମୋହନ !
କଟାକ୍ଷ ତାର ମାରି ଯଶୋଦା ନୟନ,

ଦେଖୁଛି ଭେଟି ଆଜ ମନ ମୋର ଘେନ
ଧୋଇଛି ଢାଳ ଆଖିବାର ॥୧॥
କି ଆଉ ନାହିଁ ସତେ ରତନ-ଆକର
ମଦନ ମୋହନୀ ଛନ୍ଦ ଝୁରେ ଯାର
ଭବ ବିଭବ ଠୁଳ ଲକ୍ଷ୍ମୀଙ୍କର ସାର
ମରେଁ, କି ଦେବ ଦେଲ ଧାର ॥୨॥



( ୫୦ )

ଯେବେ ପ୍ରଳୟ ଗରଜେ ଘନ ଘୋର
ସେ ଯେ ତବ ନର୍ତ୍ତନ, ହେ ନଟରାଜନ !
ପ୍ରଶାନ୍ତି ଜଣାଏଁ ମନ ମୋର ।୦॥
ସେ'ତ ନୁହେଁ ଚପଳାର ରଙ୍ଗ-ଭ୍ରୂମର କଟାକ୍ଷ ଭଙ୍ଗ
ଝରେ ଅବିରଳ ତବ କରୁଣା ନିର୍ଝର
ରୂପ ଧରି ବରଷାର ଧାର ।୧।
ଧୋଇଦିଅ କଳୁଷ ରେଖା—ଆପିଦିଅ ଶାନ୍ତିର ଲେଖା
ଶିବକର ଡମ୍ବରୁ ଚଣ୍ଡକ ବଜାଦେ
ଘୋଷଇ ଜୟ ଜୟକାର ।୨।
ହେ ଚିର ସୁନ୍ଦର ସତ୍ୟ ! ହେ ପ୍ରେମ ବାନ୍ଧବ ନିତ୍ୟ !
ନବ ଜଳଧର ତବ ଆଶିଷ ବର୍ଷେ
ଭବ ଜୀବ ଦୁଃଖ ନିବାର ।୩।



( ୫୧ )

ଚିର ସୁନ୍ଦର ହେ ଚିତ୍ତ-ଚୋର !
ଦରହସି ଆସ ଆସ, ଆସ ପ୍ରିୟ ମୋର ॥୦॥
କାହିଁ ରଖିବି ଏ ସୋହାଗ ସାଇତି
କେଉଁ ମରମେ ସତେ ଆସନ ଦେବି ପାତି
ଭୁଲିବ ନୟନ ନିଦ, ସାଥୀ ! ମାତି ସାରା ଭୋର ॥୧॥
ସରଗ ଦେଖୁଁ ଶଶୀ ଉହ୍ଲାଏ
ନଗ୍ନ ସେପାରି ଚକୋର ଗାଏ,
କୁଟିଳ କବରୀ ଭରି ରଖିବି ଗୋ, ବନ୍ଧୁ ଆ !
ଦେବି ଦେବି ପୀରତିର ଡୋର ॥୨॥

—o—

( ୫୨ )

ଆସ ବନ୍ଧୁ ଆସ ପ୍ରେୟ !
ସରସ ଜଡ଼ିତ ମରମେ ଥରେ, ସରସ ପରଶ ଦିଅ ॥୦॥
ମୁକୁଳା ରଖିଛି ହୃଦୟ ଦୁଆର, ଆସ ଗୋ ପୁଜାଷ ଆସ,
ଆଶାରେ ଆଶାରେ କଟିଯାଏ ବେଳା ନ ସହେ ଆଉ ପରାଣ,
ବନ୍ଧୁ ମୋର, ଚିତ୍ତ ଚୋର ! (ଥରେ) ମିଳନର ଗୀତି ଗାଅ ।୧।
ଏଇତ ଆକାଶେ ବଜ୍ର ବିଜୁଳି, ଏଇତ ଚକୋର ଚନ୍ଦ୍ର,
ସୁନୀଳ ଫେନିଳ ଲହରୀ ମିଳନେ ସାଗର ଗରଜେ ମନ୍ଦ୍ର,
ମଧୁ ମାସେ, ଫୁଲ ବାସେ (ରସି) ନାଚେ ମଳୟ ଅନାଇଁ ।୨।

—*—

( ୫୩ )

## ଶଙ୍ଖ-ଧର, ଜାଗ !

ଶଙ୍ଖ-ଧର, ଜାଗ ଶଙ୍ଖନାଦ,
ଜାଗ ଧର୍ମ ଭସ୍ମ ହେଲାଣି,
ଦଳିତ ସୁରଗଣ, ପୀଡ଼ିତ ଅନ୍ତର
ଜାଗ ହେ ଅବନାଶି ! ॥ ୦ ॥
ରୁଦ୍ଧ ଦ୍ୱାର, ରୁଷ୍ଟ ଦାନବ
ଖାନ୍ତ ଖାନ୍ତ ଲବେ ଗ୍ରସ୍ତ ଭବ-ଜୀବ,
ନାହିଁ ହେ ଶକତି, ନିଖିଳ ଜନଗତି !
ଚକ୍ରଧର ! ଜାଗ ଅସୁର ଖାସି । ୧ ।

—·○—

( ୫୪ )

ସଜଡା ତୋର ସାଥ ଯା'ରେ
ମନୁଆ ! ଦୁନିଆ ହାଟ ଏ;
ଥିର ଥିର ତୋ ପଦ ପକା ରେ
ମନୁଆଁ ! ଭଣ୍ଡା ବାଟ ଏ ॥ ୦ ॥
'ଫୁଟା' ବଜାଏ 'ଫଟା' ବଜାଏ
ମାଟି ବକେ ଥିଲେ ପାଟି,
ଝଲମଲ ବୃଦ୍ଧମା ଚନ୍ଦ୍ର ନିନ୍ଦ କେ
ଝୁରେ ଘୋର ଘନ ରାତି;
କେ କ୍ଷୀର ଶାକର ଭୋଜନ ନିଦେ
ଖାର କାର ମନ ସାଥୀ,
ଗୀତା ମେଲଇ, ସୀତା ଭୁଲଇ
ସାଧୁ ସନ୍ଥ କେ ବୋଲଏ । ୧ ।

ସିଂହ ଗୁହାରେ ଦେଖ ତୁ ମନୁଆଁ,
ମିରିଗ କରେ ଥେଇ ନାଚ,
ତକ୍ଷକ ବୁଲେ ଚେତ ରେ ମନୁଆଁ
ଘୁଁଷି ଘୁଁଷି ପଥ ଛାଟ;
ଚିତା କାଟିକେ ମିଛାକ ପାଲ
ଘୁଞ୍ଚିରେ କାଳ ବୁଲଏ । ୨ ।

—*—

( ୫୫ )

ମୁରଲୀଧର ଶ୍ୟାମ ଜୀବନ ଧନ ମୋର ॥ ୦ ॥
ନଟବର ସୁନ୍ଦର ଗିରିଧର ନାଗର
ଗଳେ ଦୋଳେ ବନ ଫୁଲ ହାର,
ଯମୁନା କୂଳଆ ସେ ଯେ ନିତି ସଖି ମତି ହରେ
ଧେନୁ ଚରା ବାଙ୍କ ଚୂଳ ଚାରୁ । ୧ ।
ବଜାଇ ମୋହନ ବେଣୁ ରାଧା ରାଧା ଗାଏ କାହ୍ନୁ
ପଦେ ଶୋଭେ କନକ ନୂପୁର,
ଶିରେ ଶିଖଣ୍ଡି ମୁକୁଟ ପୀତପଟ ନଟଘଟ
ବରଜ-କିଶୋରୀ ମନଚୋର । ୨ ।
ଅଖିଳ-ଜନ ବନ୍ଦନ ଛବି ନିନ୍ଦେ ନବଘନ
ଭଜନ୍ତ କମଳ ପଦ ଯା'ର,
ଅଗତି ଗତି କାରଣ, ଜପୁ ବିପଦ ବାରଣ
କବିଶଶୀ ଜଣାଏ ଜୁହାର । ୩ ।

—o—

( ୫୬ )

ଶମ୍ଭୁ ଶିବ ହର ଶଙ୍କର (ଜୟ) !!!
ଜୟ ଚନ୍ଦ୍ରମଉଳି ବିଭୂତି-ବିଭୂଷଣ
ମଧୁର ଛବି, ଗଜଣ୍ଣ ସୁଖ ବର୍ଦ୍ଧନ
ନିଗମ ଯୋଗୀଜନ ବରଦ ସୁନ୍ଦର ।୧।
କାମ ଗରହର ଅଙ୍ଗକାନ୍ତି
ମୁଖ ସୁଧାକର ମାନ ହାନ୍ତି
କୁଟିଳ ଜଟ ସୁରଧୁନି ବିରାଜିତ
ବାସ କଇଳାସ କନ୍ଦର ।୨।

—○—

( ୫୭ )

ହରି କେବେ ପରଖିବ ଆଉ ?
ନିରଖ ପଥଣେ ଆତୁର ଅଛି କି
ସାଧିବାକୁ ସତେ ଦାଉ ? ॥ ୦ ॥
ଏତକ କଠୋର ତୁମେ ନାରାୟଣ
ଜଳ କହେ ମିଛେ ବିପଦ ବାରଣ
ପାଲଟିଲ ଅବା ମୋ ଲାଗି ପାଷାଣ
ଚନ୍ଦ୍ର ଚେତନାକ ବାହୁ ? । ୧ ।
ଅପରାଧ ଯେବେ ଥିଲା କିଛି ମୋର
ତୁମେ ତ ବୋଲାଅ କ୍ଷମାର ସାଗର
କରମେ ଲେଖିଛ, ଆଶା-ଶଶି-ଚର
ଗରାସିବ ସତେ ରାହୁ ? । ୨ ।

---

( ୫୮ )

ନବ ସୁନ୍ଦର ଚନ୍ଦନ ଗନ୍ଧଭରା
ତବ ଅଞ୍ଜନ-ଗଞ୍ଜନ ଅଂଶ ପରା ?
କାନନ କାମିନୀ-କୁଞ୍ଜ ଛଳେ
ରାଇ ବିନୋଦିନୀ ମାନହରା ॥ ୦ ॥
କଞ୍ଜ ଚରଣେ ତବ ନୂପୁର ଭରି
କେ ଶିଖାଏ ମଧୁର ବୋଲ,
ବନ୍ଧୁ, ନିତି ମୋର ସପନେ ଗୋ !
ଆସ ଥରେ ଥରେ ସତେ ମନଚୋରା ।୧।
ଚେତ ଚୁହେଁ କେହ୍ନ ନାହିଁ ନାହିଁ
ପାଦେ ନିଶିଥିନୀ ଚୁହିଁ ଚୁହିଁ,
କୋଇଲି କଣ୍ଠେ ସେ ସୁର ପୂରେ
ମୁଁ ଯେ ଝୁରି ମରେ ଦିନରାତି ସାରା ।୨।

( ୫୯ )

ମାଧବ, ମନ ମୋହନ !
ଛଇଳ ନାଗର କାହ୍ନା ଚନ୍ଦ୍ର ବଦନ ॥ ୦ ॥
ସଜଳ ଜଳଦ ରୁଚି ଶ୍ୟାମ ତ୍ରିଭଙ୍ଗ ମୂରତି
ନଟବର ପୀତପଟ ନନ୍ଦ ନନ୍ଦନ ।୧।
ଗୋପିନୀ ପୀରତି ସଙ୍ଗ ନିନ୍ଦିତ କୋଟି ଅନଙ୍ଗ
ସ୍ତ୍ରୀମତି ମତି ମୋହନ, ଜୀବ-ଜୀବନ ।୨।
ଅଗତିଗତି କାରଣ ଅନାଥ ହେ ନାରାୟଣ !
ଅନ୍ତମେ ଚରଣେ ଦାନ ମାଗେ ଶରଣ ।୩।

( ୭୦ )

କେ ରେ ! ନୟନ ଦୁଆରେ,
ରୂପ କିଏ ସୁଧାକର—ଗରବ ହରାଇବାର
ସପନର ସାଥୀ ମୋର    ପୀତପଟ ମନଚୋର
ନିତି ଶେଷେ ହସି ଆଖି ଠାରେ ।୧।

ଜଳଦ ନବଘନ    ନଟନ ଘଟନ ଠାମ
ଅପରୂପ ଛବି ଅଭିରାମ,
ମୁରଲୀ ଅଧରେ ଧରି    ନଟବର ସେ ନାଗର
ମତି ମୋର ନିତି ସତେ ହାରେ ।୨।

ମେଲିଲେ ନୟନ ତାରା,    ସେ ଯେ ଗୋ ନଦିଏ ଧରା
ଜାଗରେ ସେ ଯାଏ ତ ପାସୋରି,
ଜଗଚନ୍ଦ୍ର ମାଗେ ହରି !    ନଦ ଝଅ ଆଖିଭରି
ସପନର ଯବନିକା ପାରେ ।୩।



( ୭୧ )

ଜୟ କୃଷ୍ଣଚନ୍ଦ୍ର ହରେ !
ଶ୍ୟାମ ହେ—ମୁରତି ଜିଣେ କୋଟି କାମ ହେ !
ଅଭିରାମ ମୋହନ ଠାମ ହେ !
ଶରଣ ରଖ ପ୍ରଭୁ ପ୍ରଣତ ଜନରେ,
ଚରଣ କଞ୍ଜତଳେ ।୧।

ସୁରୁ-ଚନ୍ଦନ-ଗନ୍ଧ-ଶୋଭନ,
ଚନ୍ଦ୍ରଜିତ-ଛବି ଭୁବନ-ମୋହନ
ବନମାପୁ ହେ ନନ୍ଦ ନନ୍ଦନ !
ମଧୁର ବଂଶୀ କରେ ।୨।



( ୬୨ )

ବିଚକ୍ଷଣା ସଇ ନୁହେଁ ମୁଁ ଶ୍ୟାମ,
ବିତାଇବି ଝୁରି ଝୁରି ଦିବସ ଯାମ ॥ ୦ ॥
ବନଫୁଲ କୁଞ୍ଜେ, ନିତି ଫୁଲ ସଞ୍ଜେ,
ଘୋଷି ହେବ ନାହିଁ ନାମ ।୧।
ରଖିନାହିଁ ଆଶ, ଆହେ ପୀତବାସ
ବାଙ୍କ ଛବି ଅଭିରାମ ।୨।
ବଉଳର ହାର, ହେଲା ନାରଖାର,
ନ ଶୁଣେ ମୁଁ କାହ୍ନୁ ନାମ ।୩।
ଲ୍ଦରେ ବସାଇଁ, ହାର ହେ କହ୍ନାଇ,
ଭେଟୁଥିବି ଅବିରାମ ।୪।
ଏ ମୋ ନିବେଦନ, କଳାଶଶୀ ଘେନ,
ରଖ କବିଶଶୀ ମାନ ।୫।

—o—

( ୬୩ )

ତନ୍ଦ୍ରା-ହସ୍ତ ନିଶି ସାରେ, ତୁମ ପଥ ଚାହିଁ
ସ୍ୱପ୍ନ ଏକା ସାଥୀ ମୋର, ସବୁ ଖାଲି ଯୁଇ ॥ ୦ ॥
ଏ ଗଗନେ ଖଗ ନାହିଁ, ତରୁ ଡକ୍କି ମାରେ
ଏ ପବନେ ଗନ୍ଧନାହିଁ, ଦୃଷ୍ଟି ଦୂର ଦୂରେ ।
ମନ୍ଦରେ ମୋ ପ୍ରିୟ ! ତୁମେ ଆସି, ଆସ ନାହିଁ,
ଶୂନ୍ୟା ମୋର ଫୁଲହାର ବାସି ତୁମ ପାଇଁ । ୧ ।

ଥରେ ଥରେ ମେଘେ ଯେବେ ଚନ୍ଦ୍ର ତାରା ଲୁଚେ,
ଝଞ୍ଜା ଭୁଲେ ରଙ୍ଗେ ନାଚି, ବଜ୍ର ଖେଳା ରଚେ ।
କୁଞ୍ଜେ ମୋର ପ୍ରିୟତମ ! ତୁମ ବେଣୁ ବାଜେ,
ଦୂଷ୍ପରହେ ଶୁଣୁ ମନ, ଦୂରେ ଦୂରେ ଲାଜେ ।
ଫେରାଇଛି ବାରେ ବାରେ ଅଭିମାନେ ଥାଇ,
ଜଳଚନ୍ଦ୍ର ଡରାଇଛି ସେ ପରଶ ପାଇ—
(ଦାଟେ ରୁନ୍ଧ ପାଇ) । ୨ ।

( ୭୪ )

ଭଦ୍ରା-ହର ଏ ନୟନେ, ପ୍ରିୟ ମୋର !
ଆସ ଅଞ୍ଜନ-ଘନ ବରନେ ॥ ୦ ॥
ହେଜ ପଡେ, ଏ ସପନ-ଛବି ଘୁମ ପାସୋରା
ଆଖି ହେରୁ ପୁଂକଆ ତାରା
ରଙ୍ଗ ପଲକେ ପଡେ ଲିଭୁ କଜଳ ଗିରା
ତୁମେ ଯେନାଇଁ ଦଅ, ପ୍ରିୟ ! ଜଣି ଶୟନେ
କୁହୁ ସାଥୀ ଏ ବସନ୍ତ ଋନେ,
ଆସିବାର ନାହିଁ ତ ମନେ (କେବେ) ।୧।
କାଶ ଟାହୁଆ ଖୋଷି ଯେବେ ଶରତ ରାଣୀ
ଡାକେ ଶୀତରେ ଠାରି ମୁଖେ ଅଫୁଟା ବାଣୀ
ସେବ୍ଧି ଜାକର ତଳେ ପ୍ରିୟ, ଆସ ସପନେ ।୨।
ଯେବେ କଳା ବଜୁଦ ଶାଢ଼ୀ,
ତନୁସାରା ସରଗେ ଜଢ଼ି;
ବଜ୍ର ଧମକ ଦିଏ, ଆଖି ତରଟି ତାର
ଜଳଚନ୍ଦ୍ର ଡାକେ :—ପ୍ରିୟ ବସ ମରମେ ।୩।



( ୬୫ )

**ଥ**ରେ ଯା କରମେ ଲିହି ଅଛ ବନ୍ଧୁ !
ବଦଳ କି ତା'ର ନାହିଁ ?
କାହିଁପାଇଁ ମିଛେ ବାନା ଉଡ଼ାଉଛ,
କ୍ଷମା-ସାଗର ବୋଲାଇ ? ॥୦॥
ଶରଣ ବୋଲି ଯେ ବରଣ କଲାଟି
ଚରଣ ବେନି ତୁମ୍ଭର,
ନ ବୋଲି ହେ ! ଠେଲି ଦେଉଛ, ତୁଚ୍ଛା କି
ବୋଲାଅ ଦୟାସାଗର ?
'ଶରଣ-ପଞ୍ଜର' କହି
କେତେ ଆଉ ସହେ ଧଇର୍ଯ୍ୟ ଧରିବ
ମନକୁ ପ୍ରବୋଧ ଦେଇ ? ।୧।



( ୬୬ )

**ଘେ**ନ ମିନତି, ଗିରିଧାରୀ, ବନଚାରୀ ହେ ! ॥୦॥
ମାଗିବାକୁ କିଛି ଆସିନାହିଁ ତ ମୁଁ
ତମର କରୁଣା ଦୁଆରେ,
କହୁଛି ଏତିକି—ଜଳିବାକୁ ମନ
ବଳୁନାହିଁ ଆଉ ନିଆଁରେ;
ଯେ ନିଆଁ ଜାଳିଲ ଗୋପପୁରେ ଥରେ,
ସେଇ ନିଆଁ ଥରେ ଜାଳ,
ଏ ନିଆଁ ବଦଳେ, ସେ ନିଆଁରେ ଜଳି
ଭୁଲିବି ସବୁ ଜଞ୍ଜାଳ;

ଚୋଡ଼ା ପାଉଁଶରେ ଥରେ ଯିବ ବୁଲି,
ଏତକ ମିଳନ୍ତି ମୋର ବନମାଳୀ !
ଧନ, ରତନ ମୁଁ କିଛି ମାଗୁନାହିଁ
ଡର ଯାଉନାହିଁ ହର !
ବଳଦେବେ ଥରେ, କମଳ ଚରଣେ
ମନ ସାଧ ଯିବ ପୂରି ॥୧॥



( ୬୭ )

ମହାପ୍ରଭୁ ! ଶୁଣ ମୋ ଗୁହାରି
ଅନୁଦିନ ଦୁଃଖ ଭାର ହେଲଣି ତ ଭାରି ॥ ୦ ॥
ଅଥଳ ସାଗର ବାରି, ଅଗାଧର ଭଙ୍ଗା ତରୀ
ଛଡ଼ାଇ ତ ଦେଖାନାହିଁ କେ କରିବ ପାରି ? । ୧ ।
ସ୍ୱର୍ଗ ବନେ ଅଣସ୍ତଣୀ, ମୁଁ ପର କୁଟୀରବାସୀ
ଘର ଭୂଲ ଯାଏ ଜଳି, ଟେକା ଯାଏ ହାରି । ୨ ।
ନବଚନ୍ଦ୍ର କହେ ଏବେ, ଡରନାହିଁ ହରି ! ସବେ
ଦେଇଛ ଯା, ସେନକ୍ଷା ତା, ଅନେ ନାହିଁ ବାରି ।୩।



( ୬୮ )

ଥରେ ମୁରଲୀ ଧର ଘନଶ୍ୟାମ !
ରୁରୁ ଚରଣେ କମ ନୂପୁର ଖେଳାଅ
ହାଣ ଯୁଦାରୁ ବୋଟି କାମ ॥ ୦ ॥

କଟିତଟ କଙ୍କିଣୀ, ଭୁବନ ମନ ଜିଣି
ଝୁମୁଝୁମୁ ବାଜୁ ମଧୁରେ
ବନଫୁଲ ମାଳା, ଦୋଳ ଦୋଳ ଖେଳୁ
ଭରମାଇଁ ବରଜ ବଧୂରେ,
ନାଚ ଥରେ ବଙ୍କିମ ଠାମ ! ।୧।

—o—

( ୨୯ )

ପାପ ନିବାରଣୀ, ଦୁଷ୍ଟ ବିଦାରଣୀ
ମହିଷମର୍ଦ୍ଦିନୀ ତୁ ମା—
କଇଳାଶ ନନ୍ଦିନୀ, ଜୟ ଜଗତବନ୍ଦିନୀ
ଜୟ, ଜୟ, ଜୟ, ଜୟ ଗୌରୀ ।୦।
ଅସୁର ବିନାଶିନୀ, କାଳୀ କରାଳିନୀ
ତୁ ଯେ ଦୁର୍ଜ୍ଜୟ ରଣଚଣ୍ଡୀ,
ଜନ୍ମ ଲଭୁ ମା ! ଜନହିତେ ଉମା,
ତାପିତ-ଦୁର୍ଗତି ଖଣ୍ଡି ;
କବିଚନ୍ଦ୍ର ଜଣାଏ ପଦେ
ତୁ ଯେ ସାହା ଶର ବିପଦେ
ଜନମ ଜନମ ଦୁଃଖ ତାର ।୧।

—o—

( ୭୦ )

ନାରାୟଣ, ଜୟ ହେ ! ॥୦॥

ଅଗତିର ଗତି ଲକ୍ଷ୍ମୀପତି, କମଳ-ବନ-ବିହାରୀ,
କଞ୍ଜ-ଚରଣ, ଜଗତ ଶରଣ, ସକଳ କଲ୍ମଷ-ହାରୀ;
ଅଖିଳ ବିଶ୍ୱ, ବନ୍ଦନ ତବ ଗାଏ ମଙ୍ଗଳମୟ ହେ ! ॥ ୧ ॥
ପାପ ଭରରେ ଯେବେ ଧରା ଟଳମଳ,
ରୂପ ଧରି ଯୁଗେ ଯୁଗେ ଉଠ ଫେଳ;
ଜୟ ମୁରାରି, ଚକ୍ରଧାରୀ !
ନାଶ ବିପଦ ଭୟ ହେ ॥ ୨ ॥

—୦—

( ୭୧ )

ଜାଗ ହେ ଶଙ୍ଖ-ଚକ୍ରଧାରୀ ! ॥୦॥

ଯେବେ ପ୍ରଳୟ ବଜ୍ରଦ ଘନ ଡାକେ
ଥରି ଥରି ଜନ ହିଆ ଶଙ୍କେ
ଯେବେ ଦାମିନୀ ଭୂମି ଭଙ୍ଗି ଚମକେ ନୟନ ପାରି ।୧।
ଯେବେ ଝଞ୍ଜାପବନ ଘୂରି ଘୂରି ଆସେ
ଅନ୍ଧକାର ଭବ ଗ୍ରାସେ
ଯେବେ ଜଳଧର ଥର ଥର ଅବିରଳ ବର୍ଷଇ ବାରି ।୨।
ଯେବେ ଦଳିତ ଜୀବନ ଥରି ହାସେ
ଲୁହେଁ କରୁଣା ଜଳ ଆଶେ,
ତୁମେ ରୂପ ଧରି ଯୁଗେ ଯୁଗେ ଅବତର,
ହେ ଦୁଃଖହାରୀ ।୩।

———

( ୭୨ )

ମନ-ମୋହନ ମନମୋହନ, ନାଗର,
ନବଘନ ସୁନ୍ଦର ମୋର (ନାଗର) ।୦।।
କାନନଗୃହୀ, ଗିରିବରଧାରୀ, ରାଇ ମନେ ମତ୍ତ ହାରି
ଯମୁନା ତଟ ନୀପ-କୁଞ୍ଜବିହାରୀ
ବ୍ରଜବଧୂ ଝୁରେ ଅନିବାର ।୧।
ଶିରେ ଶିଖି ଶିଖା ମୋହେ,
ଅଙ୍ଗେ ପୀତପଟ ଶୋହେ,
ମୁରଲୀ ମଧୁରେ ଗାଏ,
ନିଧୁବନ ସୁରେ ଧ୍ୱାଏ;
କଣ୍ଠ ହାର, ବନଫୁଲ ହାର
ମନ୍ଦ ମରୁତେ ଝୁଲି ଝୁଲେ
କତଶତ ମାଗେ, କଞ୍ଜ ଚରଣ ଧୂଳି
ଜଗଜନ ଖେଦ ନିବାର ।୨।

( ୭୩ )

ଭଜରେ ତୁ ଶ୍ୟାମ ମୋହନ
ଆନନ୍ଦରେ ତୁ ରସନା ରେ ମନ ।। ୦ ।।
ରାସ-ରସିକ-ନାଗର ଆଶା ତୁ ନିରତେ କର,
ବାସ ଯାର ପୀତାମ୍ବର, ହାସ ପୂରିତ ଅଧର
ଛବି ତ ମଦନ ଦଳନ ।୧।
ଚରଣ ଯୁଗଳ ଯାର, ବରନ ଦଳେ କଞ୍ଜର
କାରଣ ଦେଖିଲେ ତାର, ମରଣ ମାନବ ହାର
କି କରିବ ରାଇ ଶମନ ? ।୨।

ପୀତପଟ୍ଟ ବନମାଳୀ, ଚିତ୍ତରେ ଫୁଟ ତୁ ଝଳି
ମିତ ଯାର ଗୋପବାଳୀ, ଗ୍ରନ୍ଥି ନାମ ଜପାମାଳି
କର ତା'ରେ ଜୀବନ ଧନ ।୩।
ବରଜ ବାସନାମାନ, ସରଜ ମନେ ଧିଆନ
ଅରଜ ତୁ ନାମ ଧନ, ମରଜରୁ ତେଜ ମାନ
କବିଚନ୍ଦ୍ର କରେ ବନ୍ଦନ ।୪।



( ୭୪ )

ଚରଣ କମଳ ବନ୍ଦେ, ହେ ରସରାଜ !
ରସରାଜ ! ନବ ନଟବର ଗୋପୀମାଧନ ମନ ଚୋର
କାମ ରୂପ ଏ ତିନ ଭୁବନ ନନ୍ଦେ ॥୦॥
ବନ ଫୁଲ ବନମାଳା ନବଘନ ଗଳେ ଦୋଳେ,
ଗଜ ମୋତି କୋଟି ହାର ଝକ ଝକ ଚନ୍ଦ୍ର ଝଳେ
ନାଚ ଥରେ ଗିରିଧାରୀ, ତା ଥେଇ ତା ଥେଇ ଛନ୍ଦେ ।୧।
ଯୋଗୀଜନ ବନ୍ଦନ ହେ ! ଶିଖୀ ଶିଖା ଝୁଲେ
ଚନ୍ଦନ ବର ବିନ୍ଦୁ, ଶ୍ରବଣି ତ ମକର ଦୁଲେ
ଅଧର ମୁରଲୀ ଡାକେ—ବିରଜ ଯଶୋଦା ରାଧେ ।୨।



( ୭୫ )

ଚରଣ ତଳେ ତବ ଶରଣ ମାଗେ,
ଶ୍ୟାମ ନାଗର ! ପ୍ୟାରି ରେ !
କେଶ ଝାଳର ଭୂତଳେ ଲୋଟେ,
ତେଜ ମାନ ତୁ ଗୋରୀରେ ॥୦॥

ଚନ୍ଦ୍ର ସୁବିମଳ ବଦନ ନିର୍ମଳ,
ଭରି ନୟନର ବାଟରେ,
ହାସ ଝରଣି ତୁ, ଭାଷ ମୋହିନୀ !
ଢାଳରେ ମୁରଲୀ-ଧାର ରେ ।୧।
ଆସୁ ମୋହନ, ଭାସୁ ମୋ ମନ,
ପ୍ରେମ ସାଗର-ପାଣିରେ
ଚରଣ କଙ୍କର, ମାନ ଏ ମୋର,
ସାଜେ କି ବରନାରୀ ରେ ? ।୨।

—୦—

( ୭୭ )

କହ ମନମୋହନ, ତନୁ ଛୁଇଁ କହ ତ
ସାରି ନାହିଁ କି ଗୋପ-ଗୋପୀ ମହତ ।।୦।।
ଏଡ଼କି ଧୃଷ୍ଟ ହେଲ ବିବେକ ହଜାଇଲ,
ଯମୁନାତଟ ପଟେ ମୁରଲୀ ବଜାଇଲ,
ଝୁରାଇ ମରାଇଲ ମିଛ ନୁହ ତ ।୧।
କୁସୁମ ବନେ ଡାକି ସଙ୍କେ ରଖାଇ ଠାକ
କାଲି ତ ହେଲ ଠକ ଆଜି କି ଅଛୁ ବାକି
ସୁନା ଗୋରୀରେ ଥରେ ଫେରି ଚାହଁ ତ ।୨।
ସହଜେ ନାରୀମନ, ତୁମେ ଶିଖଣ୍ଡି-ଝର
ଆଜି ପଡ଼ିଛ ଧରା କହ୍ନାଇଁ ଠାବର
ଦେଉ ମୁଁ ଗାଳି ବଳଥିଲେ ସହ ତ ।୩।
କୂଟ କପଟ ଅନ୍ତ ନୁହଁ କି ଶିରପତି
ନୋଡ଼ିଲେ ପଦ ନନ୍ଦ କନ୍ଦଶଶୀ ବଦନ୍ତି
କାହିଁକି ଦୂରେ ଦୂରେ ଘୁଞ୍ଚି ରହ ତ ? ।୪।

—୦—

( ୭୭ )

ଶମ୍ଭୁ ଶିବ ହର ଶଙ୍କର (ଜୟ) !
ଚନ୍ଦ୍ରମୌଳୀ ବିଭୂତି ବିଭୂଷଣ—
ମଧୁର ଛବି, ଗଙ୍ଗା-ସୁଖ-ବର୍ଦ୍ଧନ
ନିଗମ ଯୋଗୀଜନ ବରଦ, ସୁନ୍ଦର ।୧।
କାମ ଗର୍ବ-ହର ଅନ୍ଧକାରି !
ମୁଖ ସୁଧାକର ମାନ-ହାରି !
କୁଟିଳ ଜଟ-ସୁରଧୁନୀ ବିରାଜିତ
ବାସ କଇଲାଶ କନ୍ଦର ।୨।

—o—

( ୭୮ )

ଜୟତୁ, ଜଡ଼-ତମସା-ବାରଣୀ
ଭଗବତୀ ସାରଦେ ! ॥୦॥
ଜୟତୁ ବାକ୍‌ବାଦନୀ,
ଜୟତୁ ନାଦପୂର୍ଣ୍ଣୀ,
ନିଖିଳ-ଜନ-ମଙ୍ଗଳା,
ପ୍ରସୀଦ ମା ଶୁଭଦେ !
ଶ୍ୱେତ କମଳ-ବନ-ବାସିନୀ ଜୟତୁ,
କାଶ-କୁସୁମ-ଦଳ-ହାସିନୀ ଜୟତୁ,
ଜ୍ଞାନ-ଦାୟିନୀ ଗୋ ମା !
ପ୍ରଣତ ଭକତ ବରଦେ ! ।୧।

—o—

( ୭୯ )

ସାରଦା ! ବନ୍ଦେ—
ଅମଳ ଧବଳ ବରଣୀ
ବୀଣା ପୁସ୍ତକ ଧାରିଣୀ
ବିଦ୍ୟା-ବର-ବିଧାୟିନୀ,
ମଧୁ ହାସିନୀ, ମଧୁ ଭାଷିଣୀ, ଜନନୀ, ନାରାୟଣୀ
ମଙ୍ଗଳ କାରିଣୀ
କମଳ ଦଳ-ବାସିନୀ
ସୁର-ନର-ମୁନି ବନ୍ଦିନୀ, ଗୀତ-ବାଦ୍ୟ-ପ୍ରମୋଦିନୀ ॥

—ଃ୦ଃ—

( ୮୦ )

ନମୋ ନମୋ ଅଜ୍ଞାନ-ତମ-ନାଶିନୀ ।୦।
ବୀଣା ଦଣ୍ଡ ମଣ୍ଡିତା, ବିବିଧ ବିଦ୍ୟା ପଣ୍ଡିତା
ସକଳ ଗୁଣ-ଯୁତା
ବେଦମାତା ବରଦାୟିନୀ ।୧।
ଚନ୍ଦ୍ର ଧବଳ ବରଣୀ
ଶ୍ୱେତ ମଙ୍ଗଳ ବିହାରିଣୀ,
ତ୍ରିଭୁବନ ବନ୍ଦିତା,
ଜଗମାତା, ଦୁଃଖ-ହାରିଣୀ ।୨।

—୦—

( ୮୧ )

ଚରଣ ତଳେ ମା, ଶରଣ ଦିଅ ଗୋ,
କରୁଣାବନ୍ତୀ ଭାରତୀ !
ଫୁଲ ଚନ୍ଦନ ଘେନ ଗୋ ଜନନୀ,
ଅଭିନନ୍ଦନ ଆରତି;
ଅପସରୁ ଜଡ଼ ତିମିର ରାଶି
ମନ ମନ୍ଦିରେ ବିଜୟ କର ଗୋ
ବରଦା ସରସ୍ୱତୀ ॥

---

( ୮୨ )

ଜୟ ମା ବିଜୟ-ବର୍ଦ୍ଧିନୀ ॥୦॥
ଅମଳ କମଳ ଦଳ, ସାଜେ ଚରଣ ତଳ,
ବୀଣା ପୁସ୍ତକ ଧାରିଣୀ,
ଭକ୍ତ-ମାନସ-ଚାରିଣୀ;
ଅଭୟ ବରଦା, ସାରଦା, ଶୁଭ-ଦାୟିନୀ ।୧।
ଜ୍ଞାନ-ଦାୟିନୀ, ଚରଣ ତଳେ ତବ
ନିଖିଳ ସୁର ନର ବନ୍ଦେ,
ବାଣୀ ଗୋ ! ଜଗ ଜାଗରିତ କର
ତବ ସଙ୍ଗୀତ ଛନ୍ଦେ;
କଣ୍ଠେ କଣ୍ଠେ ମୁଖର ଉଠୁ ଗୋ,
ଆଗମନୀ ତବ ଜନନୀ !
ଜ୍ଞାନ ଆଲୋକ, ହୃଦର ଶୁଦ୍ଧତା,
ପ୍ରଣତ ଘେନ ଅଜ୍ଞାନ-ବାରିଣୀ ।୨।



( ୮୩ )

ଜାଗୃହ୍ବ, ଜାଗୃହ୍ବ, ଜାଗୃହ୍ବ, ଭଗବାନ !
ଅତ୍ୟାଗ୍ନିର ପ୍ରପୀଡ଼ିତ ମହୀ
ପ୍ରଳୟ ବହ୍ନି ଜଳେ ଢଗ ଗ୍ରାଇ,
ଖାଡ ସନ୍ତ ଜୀବ, ହାହ୍ବ ମାଧବ, ମାଧବ ଭଗବାନ ! ।୧।
ବେଦନା କଣ୍ଠେ ଆକୁଳ ଜଗଜନ
ଭୟୁଢାଗ୍ର, କରେ ତବ ଆବାହନ,
ଶରଣ ମାଗେ କୋଟି ତାପିତ ସନ୍ତାନ
ଆସ ତାପ-ହାରି ! ଆସ ନାରାୟଣ !
ଶଙ୍ଖ-ଚକ୍ର-ଗଦା-ପଦ୍ମ ଧାରୀ ।୨।

—*—

( ୮୪ )

ତରୁଣ-ଅରୁଣ କିରଣ ଝଲକେ, ଜାଗ ଜାଗ ହୃତକାଷ୍ଟ
କନକ-ଭୁଲକା ପରଶେ ତବ,
ତେଜୁ କୋଟି ନର-ନାରୀ ॥୦॥
ବିହଗ କଣ୍ଠେ ତବ ଜୟ ଗୀତି,
ଗଗନ ଜାଳନ୍ତି ଆରତିର ବତି,
ଘନ କାନନ ପରଶି ପବନ ଗାଏ ମନ୍ଦ ମର୍ମ୍ମର ।୧।
ଫୁଲ ଡାଳି ଶିରେ ଅବନତ ଲତା,
ପ୍ରଣତ ଚରଣେ ପ୍ରେମର ଦେବତା,
ସିଞ୍ଚ ଅମଳ ଅମିୟ ପ୍ରିୟ ହେ ! ଝରର ଶାନ୍ତ ବାରି ।୨।

—o—

( ୮୫ )

ସୁଧା ଗରଳର ଘର ମୁଖ ତୋର
ନ ଫିଟାଅ ତାକୁ ଆରେ ଭିଖାରି,
ମନ ଜାଣି ଦେବ, ଅଛି ଜଣେ, ତାକୁ—
ମାଗ ଖାଲି ଦୁଇ ହାତ ପସାରି ॥୦॥
ତୋ ମନେ କ ଅଛି, ତା ମନେ କ ଅଛି,
ଅନ୍ଧ ଭିଖାରି ଜାଣୁ କ'ରେ କିଛି ?
ଊଣା ଅଧିକ ତୁ, ମାଗିଦେଲେ ପରା
ଢଅ-ହାତ ତଳେ ଯିବୁ ତ ହାରି ।୧।
ମନ କର ନାହିଁ ଯମୁନା ଘାଟକୁ,
ବନାଅ ବାଟ ତୁ ଆପଣା ଘଟକୁ;
ବାଟ କଡ଼େ ବସି, ହାତ ପାତି ଥାଅ
ଯାହା ଦେବ ସେ ତ ତାହା ତୋହରି ।୨।
ଜାଣେ ସେ ତୋହର ଗରଜରେ ବାଇ,
'ମଲୁ ମଲୁ' ବୋଲି କେତେ ହେଉ ଗାଇ ?
ମରିବାରୁ ଯେବେ ମାରିବ, ରଖିଲେ—
ରଖିବ, ସେ ଏକା ମନ ତାହାରି ।୩।

—o—

( ୮୬ )

ଜାଗରେ ଶ୍ୟାମ କହ୍ନାଇ !
ଚୁମ୍ବି ପୂରୁବ ଘନ, ଖେଳେ ନବଘନ୍ନୁ,
କୁଙ୍କୁମ ରଙ୍ଗ ବୋଳାଇ ॥

ଜାଗ ମନୋହର ନନ୍ଦ କିଶୋର !
ଜାଗରେ ନାଗର ବ୍ରଜ ମନଚୋର !!
କୁହୁ କୁହୁ କୁଞ୍ଜେ କୋଇଲି ଡାକେ,
ଉଠ ଶଶୀ-ନଶି ଗଲା ପାହି ।

—o—

( ୮୭ )

ପଗ୍ରତ ଆକାଶେ ଉଦିଲା ତପନ,
ପାହିଲା ତାମସୀ ରାତି,
କୋଟିଏ ରତନ ପ୍ରଦୀପ ଲିଭିଲା
ଜାଗିଲା ବସୁଧାରୀ— ॥୦॥
ଉଠ ରେ ଉଠ ରେ ସନ୍ତାନ ମୋର,
ତେଜ ସୁଖ ଶେଜ, ତେଜ ଘୁମ ଘୋର,
ବଜାଇ ଶଙ୍ଖ ମର୍ଦ୍ଦଳ ଭେରୀ, ହୁଅ ପ୍ରେମ ପଥ ଯାତ୍ରୀ ।୧।
ସମ୍ମୁଖେ ତୋର ଧରମ ବିଧ୍ବଡ଼,
ପାଷଣ୍ଡ ପକାଅ ବିପଥେ ନ ହୁଡ଼,
ହେର ଜାଗ୍ରତ ସନ୍ତ୍ରୀ ।୨।

—o—

( ୮୮ )

ଆରେ ମନୁଆ ! ଏ ଜନ ଦୁନିଆ ଖେଳଘର,
ଶବ ଡାଙ୍ଗ ଖୁଣ୍ଟ, ଚାଳ-ବରଣ୍ଡା ଛପର ରେ ।୦।
ବହିଲେ ଝଡ଼ ବତାସ, ଶୋଇବ ମଜଡ଼,
ଜାଣୁ ଜାଣୁ ଲେଭୁ ମାୟା କାହିଁକ ତୋହର ରେ ? ।୧।

ଧନ ପାଇଁ ବାଇ ହୋଇ ଧରମ ହୁଡ଼ୁଛୁ
ଗଲବେଳ ସାଥୀ ତୋର ସୁନା କି ମହତ୍ତ୍ୱରେ ? ।୨।
ଟିକ ଟିକ ଟିପେ ଚିତ୍ରଗୁପ୍ତ ପାଞ୍ଜିଆ
ନିଜ ଅରଜନ ଥୁଆ ଆଉ ନାହିଁ ତାର ରେ ।୩।
ଜଡ଼ିଯିବ ଝପୁରି ତୋ ଭାଙ୍ଗି ଯିବ ହାଡ଼
ମାରିଲେ ଠେକାଏ ଥୁଆ ତୋ ଲାଗି ପଥର ରେ ।୪।

—o—

( ୮୯ )

ଦୂରେ ଦୂରେ ବୁଲେ କୁପଥେ ବିପଥେ
କୋଳେ ନିଅ ତୁମେ ଯାକି ।
ନ ମାନେ ତୁମର କୋଟିଏ ବାରଣ
ଅନ୍ତରେ କର ଡାକି ॥୦॥
ପଦ୍ମ-ପଲାଶ ନୟନେ ତମର
ଦେଖା ହୁଏ ମୋର ବନ୍ଧୁ,
ଦୁର୍ଦ୍ଦିନେ ମୋର, ଜାଣିଛୁ
ଉଚ୍ଛୁଳେ ତୁମର କରୁଣା ସିନ୍ଧୁ;
ତଥାପି ଅବୋଧ ଅମାନିଆଁ ମନ
ବୁଲଇ ସଦା ଏକାକୀ,
ନିର୍ଦ୍ଦେଶ ତବ ପାସୋରି ପକାଏଁ
ମୁଦି ଦେଇ ଦୁଇ ଆଖି ।୧।
ଯେତେ ଯାଏଁ ଦୂରେ, ତେତେ ପାଖେ ପାଖେ
ବୁଲ ତୁମେ ପ୍ରାଣ-ସଖା !
ମଥାରେ ମୋହର ପରଶ, କୋମଳ
କର ଟି ଅମିୟ-ମଖା;

ତଥାପି ଅବୁଝା ଅବିଶ୍ୱାସୀ ମୁଁ ଯେ
ପଳାଏଁ ଦୂରେ ଉପେକ୍ଷି,
ଅନ୍ଧାର ମଣେ ତପନ ଅଲୋକ
କି ଆଉ ଜୀବନେ ବାକି ? ।୨।

—o—

( ୯୦ )

ତୁମର କରୁଣା ଧାର ବହେ ଗୋ ସହସ୍ର ଧାରେ,
ଯେ ବୃଷ୍ଟିରୁ ବାରେ, ତାହା ସେ କି ଗୋ
ପାସୋରି ପାରେ ? ॥୦॥
ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା,
ସକଳେ ପାଇ ସେ ଧାରା,
ଗଗନେ ଗଗନେ ବୁଲି ତମରି ପ୍ରେମ ପ୍ରଚାରେ ।୧।
କୋଟିଜୀବ ସୁଧା ପାନେ
ବଞ୍ଚନ୍ତି ତିନି ଭୁବନେ,
ଧନ୍ୟ ତାହାର ଜୀବନ ବୁଡ଼େ ଯେ ପ୍ରେମ ସାଗରେ ।୨।

———

( ୯୧ )

ସବୁ ତ କରିଛ ମୋ ଲାଗି ବନ୍ଧୁ ହେ !
ମୁଁ ଭାବେ ତୁମକୁ ଅପର;
ସଜାଡ଼ି ସାଇତି ମୋ ଲାଗି ରଖିଛ
ସାରା ବଇଭବ ବିଶ୍ୱର ।୦।

ଫୁଲଭରା ଲତା ବାସେ ମାଦକତା,
ବିହଗର କଣ୍ଠେ ଗୀତି ମଧୁରତା,
ବରନ ବରନ ପ୍ରକୃତିର ଛବି
ସବୁ ସୁଖ ଲାଗି ମୋହର ।୧।

ତାରକା-ହସିତ, ଶଶି-ଆଲୋକିତ,
ଦୁଃଖ-ତାପ-ହରା, ରଜନୀ ସହିତ
ତୁମ ସରଜନା, କ୍ଳାନ୍ତି-ହାରିଣୀ,
ଦୂମଘୋର ଜଗ-ଜୀବର ।୨।

ସବୁ କର ତୁମେ ମୋଲାଗି ସତତ
ଆପଣାର ବୋଲି ନଭବେ ହନେ ତ,
ଦୂରେ ଅପସରେ, କୋଳେ ନିଅ ଟାଣି
ନିରବଧି ତାର ଦୋଷର ।୩।

—o—

( ୯୨ )

କଣ୍ଠେ ସେ ସୁର ଦିଅ ପ୍ରେମମୟ !
ଯେ ସୁରେ ଗାଇଲେ ବସି
ଯେତେ ଦୂରେ ଅବା, ନିକଟରେ ଥାଏଁ
ପାଇବ ପଦ ପରଶି ॥ ୦ ॥
ଯେ ମହା ସଙ୍ଗୀତ ଧାର
ଆଲୋକବ ବିଶ୍ୱସାର
ସେହି କଥା ମୋତେ ଶିଖାଇ ଦିଅ ହେ !
ଯହିଁ ତୁମେ ଥାଅ ରସି ।୧।

ସୁରେ ମୂରଛନା ଲୟ,
ମୋତେ ଗୋ ଶିଖାଇ ଦିଅ,
ଯେ ଲୟେ ମୋ ଲୟ, ଲୀନ ହେବ, ତବ
ଚରଣରେ ହବା ନଶି ।୨।

—o—

( ୯୩ )

ଜୀବନ ମୋହର କର ହେ ନାଥ !
ଚିର ସଙ୍ଗୀତମୟ,
ରଜନୀ ଦିବସ, ଝଙ୍କାର ଉଠୁ
ମଧୁ ସୁର ତାନ ଲୟ ॥୦॥
ନ ଥିବ ବିଷାଦ; ଦୂରେ ଅବସାଦ,
ନ ଥିବ ନଗଣ, ଆଶାର ବିବାଦ,
ନିତ ଅମୃତ ଧାରେ ବନ୍ଦିବ
ହେବ ମରୁଭୂମେ ଝରଣା ଉଦୟ ।୧।
ମନ-ବୀଣା ବାନ୍ଧ ତବ ମଧୁ ସୁରେ
ବାଜି ଉଠୁ ତବ ଗୀତ ସୁମଧୁରେ
ଶୁଣିବ ବୋଲି ମୁଁ ତୁମର ସଙ୍ଗୀତ
ନିଶି ଦିନ ମୋର ଆକୁଳ ହୃଦୟ ।୨।

—o—

( ୧୪ )

ଦେଖା ହେଲେ ସଖା ! ଏ ନବ ବସନ୍ତ ଦିନେ,
ସାଜିବି ତମକୁ ଫୁଟା ବଉଳରେ,
ବଡ଼ ସାଧ ମୋର ମନେ ।୦।
ମଳୟ ପରଶି ଫିଟାଇଛୁ ମୋର ମରମ କବାଟ ବେନି,
ସଜାଡ଼ି ରଖିଛୁ, ପଞ୍ଚ ପ୍ରଦୀପ, ଧୂପ ଚନ୍ଦନ ଧେନି;
ଚିର-ବାଞ୍ଛିତ ମମ—
ପରାଣରୁ ପ୍ରିୟତମ,
ଚରଣ ଧୂଳିରେ ପବିତ୍ର କରିବ
ଭରସା ରଖିଛୁ ଦିନେ,
ତମରି ପରଶେ, ଶତ ତାପ ସିନା
ଘୁଞ୍ଚିବ ଏ ଜୀବନେ ॥

—o—

( ୧୫ )

ଭଜରେ ମନ, ଆରେ...
ବିଶ୍ୱ ଯାହାର ମହିମା ଘୋଷଇ ଉଡ଼ାଇ ଜୟବାନାରେ ॥୦॥
ନିଖିଳ ଜଗତ ନିରତ ବନ୍ଦେ
ବେଦ ତନ୍ତ୍ରେ, ପ୍ରଣବ ଛନ୍ଦେ,
ଅତୁଳ କରଣି, ସ୍ତବ୍ଧ ଧରଣୀ
ମୁଗ୍ଧ ଆଖି ନିହାରେ, ।୧।
କରୁଣା ଯାହାର ରବି ଶଶୀ ତାରା,
ଜନକ, ଜନନୀ, ସୁତ, ସୁତା, ଦାରା
ବିହଗ କଣ୍ଠ, ଗୀତ ମୁଖରିତ, ମଳୟ ବନ ବିହରେ ।୨।

ଇଙ୍ଗିତେ ଯା'ର ମେଲିଲା ନୟନ
ଉଦିଲା, ହସିଲା ଗଗନେ ତପନ,
ବହିଲା ଅମିୟ ଜୀବନେ ଜୀବନେ,
କବି କଳପନା ଦ୍ୱାରେ । ୩ ।
ପାପ-ତାପ-ହର-ଆଶିଷ ଯାହାର
ସନ୍ତାନ ଲାଗି ମୁକୁଳା ଦୁଆର,
ନାହିଁ ଯହିଁ ଶୋକ, କରମ ବିପାକ
କାଳ ସିନ୍ଧୁ ଧାରେ । ୪ ।



( ୯୭ )

ଅରୂପ ସ୍ୱରୂପ ତୁମେ, ବହୁରୂପ ଧାରୀ,
ତୁମେ ରାଜରାଜେଶ୍ୱର, ପଥର ଭିକାରୀ
(ବହୁରୂପ ଧାରୀ) ||୦||

ଆକାଶ ଅଙ୍ଗେ, ଅନାଦି ଅନନ୍ତ
ଅଶନ ପ୍ରକାଶେ ତୁମେ ବଳବନ୍ତ,
ତପନ ତ ଘୋଷେ — ତୁମେ-ଦିବ୍ୟ ଜ୍ୟୋତି,
ଶଶୀ ଭାଷେ — ସୁଶୀତଳ ଜନ-ତାପ-ହାରୀ । ୧ ।

ଜଳଧି ତରଙ୍ଗେ ତୁମେ ହେ କରାଳ
ନଦୀ ପୁଣ୍ୟ ଧାରେ ତୃଷ୍ଣା ନିବାର
ମରୀଚିକା ସଙ୍ଗେ ଖେଳ ଇନ୍ଦ୍ରଜାଲ,
ଜଗ-ହିତକାରୀ, ବର୍ଷନ୍ତୁ ବାରି । ୨ ।

କୁସୁମ ସୁବାସେ ଫୁଲବାସ ତୁମେ,
ଶିଶିରେ ଝଳକେ ତୁମ ପ୍ରେମ-ଧାର,
ଝଣିଥିନୀ ବନ୍ଦେ, ଶାନ୍ତ-ଆଧାର
ବ୍ରହ୍ମାଣ୍ଡ ରଟେ—ତୁମେ ବ୍ୟୋମ-ଝଙ୍କାର ।୩।

—୦—

( ୯୭ )

ମାଧବୀ ଚଳେ, ଫେରି ଆସିବ ଥରେ,
ଶତେକ ବରଷ ବସି ପ୍ରଦୀପ ଜାଳେ—
ନୟନ ଜଳେ (ମୋର) ନୟନ ଜଳେ ॥ ୦ ॥
ନୟନେ ତବ ମୋର ନୟନ ରଖି,
ମନ ସ୍ୱେର ଗୋ, ଯିବ ନିରେଖି
ଗଢ଼ିଛୁ ରାଧା ନବଯମୁନା, ନମାନେ ମନା, ଧାର ଯମୁନା—
ନିଶି ବାସରେ, ଏକ୍ଷ ନୀପ ମୂଳେ
ନୟନ ଜଳେ (ଢାଳ) ନୟନ ଜଳେ ॥

—୧୦୪—

( ୯୮ )

ମନ, ସେପାରି କଥା ଏବେ ଭୁଲିଲୁ ନାହିଁ,
ବସିଛୁ ପାର ହେବୁ ଯମୁନା ନଇ ॥୦॥
ଦଦରା ନାଆ ଗୋଟି, ମେଘ ଆସୁଛି ଘୋଟି,
ଝଞ୍ଜା ପବନ ପୁଣି ତା ଭୁଲେ ବାଇ ।୧।

ବହିବ ଅଣଗୃଣ, ସରବ ସବୁ ଆଶ
ସାହା ନୋହିବେ ତୋର ପିଅର ଘର ।୨।
ଏ ତୋର ଛୁଣ୍ଡା ଫାଲ, ହାତ ମାଡ଼ବ କୋଲ
ବୋଲ ନ ମାନ, ନାଆ ଯିବ ଉଘର ।୩।

—o—

( ୯୯ )

ଶ୍ୟାମ, ସତେ ଗଲ ହାର ?

ଛି,ଛି, ଶ୍ୟାମ ସତେ ଗଲ ହାର
ତୁମେ ଖାଇ ଭୁଲେ ଗିରଧାରୀ ।।୦।।
'ରାଧା ରାଧା ରାଧା' ମୁରଲୀ ବଜାଇ,
ଯମୁନା ତଟ ବନେ ରାସ ରଚାଇ,
ବାଇହେଲ ମତି ଘାର ।୧।
କାହିଁଗଲା ଚନ୍ଦ୍ରାବଳୀଙ୍କ ଠାମ,
ରହିଁ, ଲାଜେ ମରେ କୋଟି କାମ,
ଝୁରି ମରିଗଲ ବ୍ରଜନାରୀ ।୨।
କଳଙ୍କଣୀ କହେ ମାନବକ ନାହିଁ
କାନ୍ଧ ମର ଥାପେ ଆନେ କନ୍ଦାଇ,
କପଟିଆ ତୁମେ ହାର ।୩।

—o—

( ୧୦୦ )

ଛି, ଛି, ଏକ କଥା ନଟ ନାଗର !
ନଇଁଗଲା ମଥା ରସ-ସାଗର !
ଛଳ ଗୁଞ୍ଜ ଗୁଢ଼ ରସ-ସାଗର ।।୦।।
ବାଂଶରୀ ଧରି, ଯମୁନା ପୁଳିନେ,
ମାନ ସାରେ କେ ମନା ନ ମାନେ ?
ରାଇ କେ ଡାକେ ଗୋ !

(ତାଳ ବନ୍ଧ)

ନହୁଲ ବୟସୀ, କାଖରେ କଳସୀ
ଯମୁନା ପାଣିକି ଗଲେ,
କର ପରା ଠାକୁ, ମନେ ପଡ଼ୁ ନାହିଁ,
ପାସୋରି ଦେଲକି ଭଲେ ?

ରାଇ କେ ଡାକେ, କହନା ଚତୁର । ୧ ।

—୦—

( ୧୦୧ )

ନାଗର ମାଳମଣି ! ଜାଗ ଜାଗ,
ପରବୀ ଗଗନ ଛୁଇଁ, ଅରୁଣ ଆସିଲେ ଉଇଁ
ଉଷାର ଅଧରେ ଫୁଟିଆସେ ରଙ୍ଗ-ରାଗ ।୧।
କମଳିନୀ ତେଜି ଲାଜ ହେଲାଣି ତ ସଜବାଜ
କେବଳ ଜାଣି ଦେଖାଉଛୁ ଅଳି ଅନୁରାଗ ।୨।

ଗୋପାଳ ବାଳକ ଦଳ          ଦୁଆରେ ହେଲେଣି ଠୁଳ
ଶେଷ ତେଜ ଧନମଣୀ ! କ୍ଷୀର ସର ମାଗ     ।୩।
ପହୁଡ଼ ଭାଙ୍ଗିବା ପାଇଁ,          କବିଚନ୍ଦ୍ର ଅଛି ଚାହିଁ
ଚରଣ ଚପିବା, ଏକା ତାର ସେବା ଭାଗ     ।୪।

---

( ୧୦୨ )

ବିଚକ୍ଷଣା ତୁ, ଜନନୀ ଶ୍ୟାମା !
ଚରଣ ପ୍ରାନ୍ତେ ଶରଣ ଦେ'ମା,
ହରମୋହିନୀ ଜଗତମାତା-ଶକ୍ତିରୂପା ପ୍ରଶାନ୍ତ ନେ'ମା ।।୦।।
ତାରିଣୀ ତୁ ଯେ ଭବାନୀ          ତାରୁ ମା' ଜୀବେ ଶିବାଣୀ
ଖଡ୍‌ଗ ଖର୍ପର ଧାରିଣୀ,          ଅସୁର କୁଳ-ନାଶିନୀ ।୧।
ଚଣ୍ଡୀକେ ଜପି ତୋ ନାମ,     କା'ର କି ନର୍କରେ କାମ ?
ଶଙ୍କର ତୋ ପାଦେ ଲୁଟେ ଦୁଃଖ ତାପ-ବାରିଣୀ । ୨ ।
କାଳୀକେ ! ପ୍ରସୀଦ ମାତା,     ଗାଏଁ ମୁଁ ତୋ ଗୁଣ ଗାଥା
କଷ୍ଟହରିଣୀ ତୋ କରୁଣା ମାଗେ ଭବ ଯାମିନୀ          ।୩।

---

( ୧୦୩ )

ଯେନାଇଁ ମୁଁ କହୁଛି ପଦେ, ହେ କହ୍ନାଇଁ !
ଦେଲ ଯେବେ ଆଖି ମୋତେ
ଲୁହ ଭରି ଦିଅ ନାହିଁ ।। ୦ ।।
ଦେଲ ଯେବେ ମନ          ହେ ମନ-ମୋହନ !
ଦିଅ ନାହିଁ ଆଶା ଛାଇ,
ଭାଇ ସର ଝୁରି          ମରିବାକୁ ହେରି
ଭାଲେ ମୋର ଲେଖ ନାହିଁ          । ୧ ।

ଦୁଃଖ ଦେଲ ଯେବେ    'ଦୁଃଖ-ହାରୀ' ତେବେ
ନ ହୁଅ ଆଜ ବୋଲାଇ,
ଲୁଲୁ ଦେଲ ଯେବେ    କି ଲାଭ ହେ, ତେବେ
ଚକଟି ନିତ ଘଟାଇ ?    । ୨ ।
ଅନ୍ଧ ଯେବେ କଲ    ନୟନକୁ ମୋର
ବାଟ ବଣା କର ନାହିଁ,
କବିଚନ୍ଦ୍ର କହେ    ଭିଖାରୀର ଝୁଲି
ନ ଦିଅ ଆଜ ଫୁଟାଇ    । ୩ ।

———

( ୧୦୪ )

ତୁମରି ଆଶାରେ ମନ-ମାନସରେ ଫୁଟେ ଶତଦଳ ମୋର,
ଆସିବ କେବେ ଗୋ ! କୁଞ୍ଜ ଦୁଆରେ ସତ କହ ନଟବର ! ॥୦॥
ନିଦ ଭୁଲା ନିଶି —    ଶଶୀ ହୁଏ ବାସି
ତୁମରି ବଇଁଶୀ    ଦୂରୁଁ ଆସେ ଭାସି
ନିତି ସତେ ଚିତ୍ତ-ଚୋର    । ୧ ।
ଦୁଆର ମେଲାଇ,    ବସେ ମୁଁ ଅନାଇଁ
କେହି ନାହିଁ ନାହିଁ,    ହସେ, ସେ ମୋ ଛାଇ
ତୁମେ ରହ ଦୂରୁଁ ଦୂର    । ୨ ।
ଆଶାରେ, ଆଶାରେ    ନିତି ଦିନ ସାରେଁ
ଯମୁନା ସେପାରେ    ଯାଇ ତ ନପାରେ
ଝୁରିମରେ ବାର ବାର    । ୩ ।
ଜୀବନର ପ୍ରିୟ !    ଦୂରେ ପଛେ ଥାଅ
କହ ତୁମେ କହ —    ଥରେ ସାଥୀ ହୁଅ
କବିଶଶୀ ମରଣର    । ୪ ।

—*—

( ୧୦୫ )

ବାରେ ବାରେ ଯମୁନା ତୀରେ,
ନ ବଜା ମୋହନ ମୁରଲୀ
ଯେ ସୁରେ କଣୋଣୀ ଝୁରେ ॥ ୦ ॥
ଯେ ଛନ୍ଦରେ ଆପଣା ମନେ,
ଯେ ସ୍ୱରେ ବହାଉ ଧିଆନେ,
ଅସରା ଶ୍ରାବଣ-ଧାରା,
ଭରେ ତା ନୟନ ଧାରେ ।୧।
ଘର ବୁଡ଼ା ପଣ ତୋର,
କାହାର ବା ଅଗୋଚର ?
ଛଳନା କେତେ ଯେ କରୁ,
ଜଳପନା ଅନ୍ତ ହାରେ ।୨।
ତୋରେ କରୁ ଗଳା ମାଳା
ଝୁରି ଝୁରି ରାଧା ମଲା
କବିଚନ୍ଦ୍ର ଯୋଡ଼ କର
ସତ କି ମିଛ ପରିରେ ।୩।

—o—

( ୧୦୬ )

ନବ ବସନ୍ତ ଜଗତଗଲ୍ଲ କାନେ, ଅତିଥି ଆସିବ ବୋଲି
ଡାକୁଆ କୋଇଲି ମଙ୍ଗଳ ଗାଏ ବଉଳ ଦୋଳରେ ଝୁଲି ॥୦॥
ଦୂରେ ଦୂରେ ଯିବ ଭ୍ରମିର ଗର୍ଜି,
ଆଜ କାହାରେ ତୋ ଭୟ ରେ ପାଖୀ!

ଏଇ ସେ ଆଗମ, ମଳୟ ପରଶେ ବୁକୁ ଉଠେ ଫୁଲି ଫୁଲି
ଯେତେ ଦୁଃଖ ସବୁ ଭୁଲି.
ଉଚ୍ଛଥି ଆସିବ ବୋଲି ।୧।

ବାଞ୍ଛିତ ଚିର ସୋହାଗ ମିଳନ ମଧୁ ଲଗନରେ ପାଇ,
କୁଟିର ଦୁଆର ଧନ୍ୟ ହେବ ଗୋ, ଜାଗି ନିଶି ଅଛୁ ଚାହିଁ;
ଅନ୍ଧାର ପଥେ ଜଳି ଉଠିବ ଗୋ ଦୀପ,
ଚଳିବ ଚାହିଁ ମୁଁ କଞ୍ଜ ଚରଣ ଛାପ,
କରୁଣା ଝରଣା ଝରିବ ତୁମରି ବାଧା ବନ୍ଧନ ଠେଲି
ଅଥଳ ସାଗରେ ମିଳନ ମନାସି ଦେଖିବ ମଧୁ ନାଆ ମେଲି ।୨।

—o—

( ୧୦୭ )

ମାନ, ମାନ ମିନତି ଗିରିଧାରୀ,
କୁଞ୍ଜେ ଆସେ ଘନ ଘେରି ॥୦॥

ନବଘନ ବୁକେ ଅନାଁ ଚପଳା ଚମକେ
ଥକାମର ଏ ନୟନ ଝରଏ ପଲକେ
ଆସେ ଆଶା, ଯାଏ ଆଶା, ଦୁଆରୁ ମୋ ଫେରି
କଥା ମାନ, ଘରେ ଥରେ ଅସ ଫେର ଧରି ।୧।

ତୁମେ ମମ ଜୀବନର ଚିର-ସାଥୀ ମୋର
ପାଶୋରି ଦେଇଛୁ ବୋଲି କରିବ କି ପର ?
ଶମିବ କି ନାହିଁ, ମୋର ଥିବ ଦୋଷପର
ଲୁହ ଭରା ନୟନ କି ସୁଖ ପାଅ ହେରି ? ।୨।

ଜାଣନା କି ସବୁଦିନେ ଅବୁଝା ମୁଁ ବୋଲି,
କେତେ ସତେ କହିବ ଗୋ ! ଆଜ ମୁଁହ ଖୋଲି ?
କବିଚନ୍ଦ୍ର ଜଣାଉଛି ଚରଣେ ଜୁହାର
ମେଘୁଆ ଅନ୍ଧାରେ ରାହା ବତାଅ ମୃରାର ! ।୩।



( ୧୦୮ )

ଚିନ୍ତାହାରି, ନୟନେ ମୋ ଦିଅ ଟିଗୋ ଅଞ୍ଜନ
ସପନର ସପନ ମୋ ଦେଇ ଗୋ ଭଞ୍ଜନ ।।୦।।
ମାନାକାଶେ ଅନ୍ଧକାରେ ଫୁଟୁ କୁଆଁ ତାରା,
ବୋଲି ଦିଅ ଶିରେ ଧୀରେ କର-ଦୁଃଖ-ହାରା;
ବାନ୍ଧିଦିଅ ଭଙ୍ଗା ତନ୍ତ୍ରୀ ଆସ ଗୋ ନାଜସ୍ତ !
ଜୀବନର ଚଲାବାଟେ ଶୁଭୁ ତୁମ ଗାନ ।।୧।।
ଧୀରେ ଧୀରେ ବାଲୁଚରେ ଫୁଟୁ ସୁନା ଲତା,
ସୁରେ ସୁରେ ମୃକ ମୁଖେ ଫୁଟୁ କୁହା କଥା,
ଅପାସୋର ରହ ତୁମେ ଜୀବନର ବନ୍ଧୁ ;
ତୁମରି ଦରଶେ ନାଚି ଉଠୁ ସାତ ସିନ୍ଧୁ ;
କାନେ କାନେ ଶୁଭୁ ନିତି, ତୁମରି ମୁରଲୀ ଗୀତି
ତୁମେ ଏକା କବିଚନ୍ଦ୍ର ହୃଦୟ ରଞ୍ଜନ ।।୨।।



( ୧୦୯ )

କୁଞ୍ଜ ବିହାରୀ ଘନଶ୍ୟାମ, ମନମୋହନ !
ଝୁଣୁ ଚରଣ ତଳ ଅଳକତ ଝଲମଲ
ଉର ପରଶେ କୁସୁମ ଦାମ ।।୦।।

ଶିରେ ଶିଖୀ ଚନ୍ଦ୍ରିକା ମନ୍ଦ ସମୀରେ
ଝୁଲି ଫୁଲ ଖେଳେ ଧୀରେ ଧୀରେ
ନବ-ଘନ ଜିତ ତନୁ-ବରନ ମନୋହର,
ନିନ୍ଦଇ ଛବି କୋଟି କାମ ॥୧॥

ଚୁମ୍ବି ଅଧର ଧୀର ମୁରଲୀ ଫୁକାରେ
ଗାଇ ଗାଇ ଗାନ ଚନ୍ଦ୍ର ନିଶାରେ
କବିଚନ୍ଦ୍ର ମାନସ— ଚନ୍ଦ୍ର ଶୋଭାବନ
ତୁମେ ଏକା ସୁନ୍ଦର ଠାମ ॥ ୨ ॥



( ୧୧୦ )

ମାନ ରଖ ମୋର ଗିରିଧାରୀ;
ନଟବର ନାଗର ମୁରଲୀ ଅଧର ହେ,
ଶରଣ ମାଗେ ମୁରାରି ॥୦॥

ଚନ୍ଦନ-ଚର୍ଚ୍ଚିତ ଶୁଭ୍ର ଚରଣ-ତଳ
ଚିର ବନ୍ଦିତ ଫୁଲ୍ଲ କମଳ ଦଳ
ସୁର, ନର, ହର-ଚିର-ହାସ୍ୟ ॥୧॥
ବନ୍ଦିତ ତ୍ରିପୁର, ନନ୍ଦିତ ବ୍ରହ୍ମା ମୋର
ନନ୍ଦିତ କର ନରକାନ୍ତ !
ବାଞ୍ଛିତ ହେ ! ମୋର କଞ୍ଚିତ କରୁଣା
କର ଭବ ତାପ ନିବାରି ॥୨॥

ଶ୍ୟାମ କଳେବର ଜିତ ନବଘନ କଳା
ଉର ପର ଦୋଳିତ ଗନ୍ଧ ସୁମନ ମାଳା
କବିଶଶୀ ଦରଶ-ଭିଖାରୀ ॥୩॥



( ୧୧୧ )

ଝାଣ ଖଗ, ସରୁ ବାଳି,
ଉପରେ ସୂରୁଯ ଗୋ,
ଅପନ୍ତର ନଗ୍ରଟ ଏ ବାଟ,
ଝୁଣ୍ଟି ଦେଲେ ହଂସା ଉଡ଼େ
ନଥାଁ ଦୁଲା ସତେ ଗୋ,
ଆଖି ଆଗେ ଆଗେ କରେ ନାଟ ॥୮॥

ତାଳୁରୁ ତଳପା ଯାଏ,
ଛାତିରେ ତ ପାଶଯାଏ
ଆହା କରିବାକୁ ନାହିଁ ସାହା,
ଆଖି ଝରେ ଲୁହ ଧାର
ପଛା ଚଳେ କାଟେ ଗର
ଉଗାରି ହେଲ କି ଚଉବାହା !
ସବୁର ପାଇଁକ ଭୂମ
ଗନ୍ଧାଦର ମେଲ ତ
ମୋହ ଲାଗି ଏକା ପଢ଼ କାଟ ? ॥୯॥

—o—

( ୧୧୨ )

ଧନବନ୍ତ ମୁଁ ଯେ, ଝରେ ମାର ଧାର ଢଏଁ
ମନ ମାରି, ତୁମ ମନରେ ମନ ମିଶାଏଁ ॥୦॥

ଜୀବନଟା ସାଙ୍ଗ ଦେଇ ତ ଆସିଛୁ
ନେବାର ତ ନାହିଁ ଜାଣି;
ଆଜ ଅବା ସତେ କେତେ କାଳ ବାକି
ପତାଇବ ମିଳେ କାଳ ?
ବାଲି-ବନ୍ଧ ଦିଆ ଆଶାର ଆଶା ସେ
ଝସାର ଢେଉ ତା ଛୁଏଁ ॥୧॥
ଅଭିମାନୀ ବୁକୁ, ସନ୍ଧି ଦାଉ ନିତି
ପଥର ପାଲଟି ଗଲା,
ନିତି ନିତି ଜାଗି ଜାଗର ରଜନୀ
ସ୍ମୃତିରେ ରବି ଉଇଁଲା !
ସଞ୍ଜ ସକାଳର ନାହିଁ ପରଭେଦ
କେବେ ଆସେ କେବେ ଯାଏ ॥୨॥
ପଚାରିବ ଖାଲି ଗୋଟିଏ କଥା ମୁଁ
ଏଇ ଶେଷ କଥା ମୋର,
'ଦିଆ' 'ନିଆ' ଦୁଇ କଥାରୁ ବଡ଼ କେ,
ମନରେ ତୁମେ ବିଚାର ?
ଆସିଥିଲି କାନ୍ଦ, ଯିବ ଯେବେ କାନ୍ଦ
ତୁମକୁ ପଚାରେ କଏ ॥୩॥

—o—

( ୧୧୩ )

ନାହିଁ କରନାହିଁ ଯାହା ତ ଦେଇଛ ନେଇଛି ମୁଁ ମଥାପାତି
ତୁମ କୁହା ମାନି ଚାଲିଛି, ନମାନି ବାଦଲ ବରଷା ରାତି ।ଘ।

ମଥାଟେକ ଯେବେ ଆକାଶେ ଅନାଏଁ
ବାଜ ଗରଜନ ମନ ଚହଲାଏ
ଚପଳା ଧମକ, ଜଗାଏ ଚମକ, ଫାଟି ନାହିଁ ଥିଲା ଛାତି ।୧।
ଦେଲ ଯାହା ଯେବେ, ନେଲ ବେଳ, ତେବେ
ହେଲ କି ମୋ ଅପରାଧ ?
ସମ୍ଭାଳି ମୁଁ ଯେତେ, ହସି ହସି ସେତେ, ସାଧି ବସିଲ ତ ବାଦ ?
ପାନ୍ତି ଦେଲ ବୋଲି ବୁକୁ ଛନ ଗାନ୍ତ ପକାଇ ଘଷିଲ କାନ୍ତ ।୨।
କେତେ ଆଖି ପାଣି ଢାଳିଲେ କେଜାଣି
ଧୋଇଦେବ ତୁମ ପାଦ,
କେତେ ଉଜାଗର ନିଶି ପୁହାଇଲେ ହେବ ତୁମ ମନବୋଧ ?
ସେତିକ ମାତର କହ ହେ ଠାକୁର ! ମାଗୁଛି ଅଞ୍ଜଳି ପାତି ।୩।

—o—

( ୧୧୪ )

କହ, କେ ତୋର ସଙ୍ଗୀ ତୁ କା’ ସଙ୍ଗୀ ରେ
ଏ ଦୁନିଆଁ ଛ ଛନିଆଁ ହରରଙ୍ଗି ରେ ।।୦।।
ଏ ତୋ ଅଙ୍ଗ ସଙ୍ଗୀ ସମସ୍ତାନ ଭୂତଂ
ଖାଇ ବନ୍ଧୁ ସିନା ତୋ' ସୁଖେ ଭାଗୀ ରେ । ୧ ।
ଯେବେ ଆସିଲୁ ତୁ ଭବେ ଏକା ଏକା
କାଠ ଛ ଖଣ୍ଡି ତୋ ସୁକୁମାର ତନୁ
ଦେବ ଜାଳି ପୋଡ଼ି ପଲକେ ଅଗିରେ;
ତେଣୁ ମୁ ରୁଖ ରେ ବେଳ ଥାଉଁ ଥାଉଁ
କୃଷ୍ଣ ଶ୍ୟାମ ପଦେ ତୁ ଅନୁରାଗୀ ରେ । ୨ ।

—o—

( ୧୧୫ )

ଚଲ ପଥୁକା ରେ !  ନ ଜାଣୁ ତୁ କ'ରେ ?
ବାଟ ବଧା-ଘର  ନୁହେଁ ପର ତୋର ॥୦॥
ଆସି ଯିବୁ ଚାଲି  ଘର ଥିବ ଖାଲି
ଧନ, ମାନ ସାରା ନୁହେ ପର ତୋର ।୧।
ଜଳ-ଛାୟା ଘେରା  ମରୀଚିକା ମାୟା
ଟାଣ ଖରା ତଳେ  ପସାରିଛି କାୟା,
ଖୋଜ ବାରି ବନ୍ଧୁ  କରମ ତୁ ନନ୍ଧୁ
କିଏ ଦେବ, କେହି ନୁହେ ପର ତୋର ।୨।
ଆଜର ଅତିଥି  ପାହିଲେ ଏ ରାତି
କାଲି ପର ଦେଖା  ଧୂଳି-ପଥ ସାଥୀ,
ମାଟି ପୁଟା ଅଙ୍ଗ  ମାଟିର ଏ ସଙ୍ଗ
ସୁତ, ସୁତା, ବନ୍ଧୁ ନୁହେଁ ପର ତୋର ।୩।
ତୋ ଶେଯ ସୁପାତି  ମିଳନର ରାତି
ସୋହାଗର ଛାତି  ଭରା ଚନ୍ଦ୍ରବତି,
କଳଚନ୍ଦ୍ର କହେ  ପଛେ ପଡ଼ି ରହେ
ଝରା ଫୁଲ ପରା, କେହି ନୁହେଁ ତୋର ।୩।

---

( ୧୧୬ )

(ମାଗୋ) କର କରୁଣା, ଅମ୍ବିକେ ! ଦେବୀ ଚଣ୍ଡିକେ,
ହର ମୋହିନୀ ବରଦେ ।୦।
ନର-ଶିର-ମାଳିନୀ,  ଭବାନୀ ତ୍ରିନୟନୀ
(ପଡ଼ି) ଚଣ୍ଡ ମୁଣ୍ଡ ମହିଷ-ମର୍ଦ୍ଦିନୀ,  ଭକ୍ତମୋଦ ବିବର୍ଦ୍ଧିନୀ
ଶରଣ-ରକ୍ଷିଣୀ, ସିଂହ-ବାହିନୀ, ଜନନୀ ହର-ପରରମଣୀ
ଶୁଭଦେ, ସୁଖଦେ, ବରଦେ ।୧।

କବିଚନ୍ଦ୍ର ତୋ ପାଦେ, ନଶି ଦିବସ ବନ୍ଦେ
(ପଡ଼) ନାହିଁ ନାହିଁ ଭବାମ୍ବି ଶଙ୍କାଶି, କେନ୍ହ କେ ଭବେ ତୋ ବନେ,
ନାମ ଜପି ତୋର, ଯାଉ ଦିନ ମୋର, ମୁକତି ଗତି ତୁ ଏ ଜୀବନେ
ଶୁଭଦେ, ସୁଖଦେ, ବରଦେ ।୨।

--*--

( ୧୧୭ )

ଜାଗ ମହେଶ୍ୱର, ଯୋଗୀ ଦିଗମ୍ବର, ତାଣ୍ଡବ ରଙ୍ଗ ବିହାରୀ
ଜାଗ ଶମ୍ଭୁ ଶିବ ! ଗଙ୍ଗାଧର ହର, ଜାଗ ଜାଗ ତ୍ରିପୁରାରି ।।୦।।
ବିଭୂତି ଭୂଷିତ ତନୁ ଜଟାଜୁଟ ଶିର
ତଥିପର ସୁରଧୁନୀ ଅବିରଳ ଚଞ୍ଚଳ,
ଭାଲ ସୁଧାକର-କିରଣ ସମୁଜ୍ଜ୍ୱଳ
ହର ହର ଶ୍ମଶାନ-ଚାରୀ ।୧।
ରଜନୀ ପ୍ରଭାତ ଉଦିତ ନବ ଭାସ୍କର
ଭୂତ ସଙ୍ଗ ପରିହର ଭୁବନେଶ୍ୱର
ଜାଗ, ମାଗେ ଦରଶନ ପଦ-କିଙ୍କର
କବିଶଶୀ ଶରଣ ଭିଖାରୀ ।୨।

---

( ୧୧୮ )

ମଧୁ ଫାଲ୍‌ଗୁନେ ଭ୍ରମର ମଳୟ ବାସେ,
ମଧୁ ବୃନ୍ଦାବନ ମଧୁର ଭ୍ରମରୀ ହାସେ
ସେଦିନ ଶୁଣିଲି—ଗାଇଲା କୋଇଲି
ମଧୁ ଭରି କୁହୁ ଭାଷେ ।। ୦ ।।

କଳା ଘନ କାନ୍ଧ ତଳେ
ମଧୁ ବଜୁ ଲତା ଖେଳେ,
ମଧୁ ଗରଜଇ ସିନ୍ଧୁ
ଲକ୍ଷ କୋଟି ମଧୁ ବିନ୍ଦୁ,
ରସାଣିତ ମଧୁ ରସେ ।୧।

ମଧୁ ଭାଷା ଶିଶୁ ମୁଖେ
ମଧୁ ଜନନୀର ବୁକେ
ମଧୁ ଯେବେ ଏ ଭୁବନ
କହ ତେବେ ଭଗବାନ !
ଝଡ଼ ଝଞ୍ଜା ଯାହା ଆସେ
ମଧୁର ନୁହଇ କି ସେ ? ।୨।

---

( ୧୧୯ )

ତୁମେ ଯେବେ ସଖା କରିବ ଗୋ ସାତପର ?
ଧୂଳିର ଧରରେ କିଏ ତେବେ ଆଜ ମୋର ॥୦॥
ଅଭିମାନେ ଯିବ ଭୁଲି, ଅନ୍ତ ଅବୋଲର ବୋଲି
ନ ଦେଲ କାହିଁକି କହ ମନ, ବୋଲ ମାନିବାର ? ।୧।
ହସି ଶଶୀ କିଏ ଦେଖା, କଳଙ୍କ କାହିଁକି ଲେଖା
ସୁମନ ସୁବାସ ତଳେ, ଲୁଚ୍ଚଇଲ କୀଟ ଘୋର ? ।୨।
ଭଲ ଯେବେ ତୁମ ଦୟା — ଭେଲ ତେବେ କାହାକିଆ
ସୁଖରେ ଗୁନ୍ଥିଲ ଦୁଃଖ, ଈଶ୍ୱର ନା ଅଈଶ୍ୱର ? ।୩।
ତୁମେ ପର ଭଗବାନ, ସବୁ ପର ତୁମ ମନ
କାହିଁ ବଡ଼ପଣ ତେବେ ଦୋଷ ଯେବେ ଯେନାକର ।୪।

—o—

( ୧୨୦ )

ବିନତି ଶୁଣ ମନମୋହନ,
ସୁନ୍ଦର ନ ଧର ଅଧର ଘନଶ୍ୟାମ ॥୦॥
ନାଗର ହେ ! ଗୋପନାଗରୀ ଚିତ୍ତ-ଚୋର
ରାଇ ମଗନ-ମନ ମନ୍ଦ ମୁରଲୀଧର
ମୂରତି ବଙ୍କିମ ଠାମ ।୧।
ଘୋର ଘନ ଘୋର ବରଷେ ଘନବାରି
ନୀଳ ଯମୁନା ନୀର ଉଥଳଇ ଭାରି
ନାହିଁ କେ ଶରଣ, ହେ ଗତି କାରଣ
ଯାଉ ଜୀବନ ଧରି ନାମ ।୨।

———

( ୧୨୧ )

ମିନତି ଶୁଣ,
ନିରାଶ ନ କର ଶ୍ୟାମ ବ୍ରଜଧନ ॥ ୦ ॥
ତୁମେ ହେ କିଶୋରୀ ମାନ
ଯଶୋଦା ଜୀବ-ଜୀବନ,
କରୁଣାକର ନବ-ଜଳଦ-ନନ୍ଦିତ ଅପଘନ ।୧।
ଦିଅ ଯେତେ ଦୁଃଖ ହରି
ସବୁ ତ ଦାନ ତୁମରି
ସହିବାର ଦିଅ ବୁଦ୍ଧି ଏତିକି ତ ନିବେଦନ ।୨।
ନାହିଁ ଅନ୍ୟ ଆଉ ଆନ
ଜଗନ୍ନାଥ ନାରାୟଣ !
ନ ଦିଅ ଚରଣେ ଠେଲି ଆହେ ପତିତପାବନ ।୩।



( ୧୨୨ )

ଆଖି ଲୁହ ଝରି, ବାରିଧି ଦେଲି ମୁଁ ଭରି
ଅନନ୍ତ ଶୟନେ ଏବେ ଘଟ୍ଟନ୍ତି ନହଲେ ହରି ॥୦॥
ଗୁରୁ ଗରଜନ ସିନ୍ଧୁ ଲହରୀ
ପଥର କାନରେ ନ ଦେବ ସେ ଭରି
ସାଗର ବେଳାରୁ ଅନାଥର ଡକା,
ପବନେ ଆସିବ ଫେରି
ଆଶାରେ ଅପାର ବାଳିବନ୍ଧ ଢ଼ିଆ
ସାରହେବ ହେ ମୁରାରି ।୧।
ତେବେ ସିନା ତୁମ ବଜ୍ର ପଣ ପ୍ରଭୁ
ଫୁଟିବ ଜଗତେ ନିତି
ତେବେ ସିନା ତୁମେ ଶରଣ-ପଞ୍ଜର
ବୋଲାଇବ ଚେତ ଛତି,
ବଳ ନାହିଁ ଯାର, ମଥାରେ ତାହାର
ପାହାର ଭୁହାଇ ମାରି
କହେ କଳାଶଶୀ ଏଥିପାଇଁ କହେ
ବୋଲାଉଛ ଚକ୍ରଧାରୀ ।୨।

---

( ୧୨୩ )

ଶରଣ ଦଅହେ ମଧୁସୂଦନ ! ତରଣ ତଳେ ହେ ଜଗବନ୍ଦନ,
ନାବ ଏକା ଭବ-ବାରିଧି କେଶବ
ନାମ ଭଜନ ବ୍ରଜମୋହନ ହେ ।୦।

ପାପ ତାପ ଜଗ—କ୍ଲାନ୍ତ ଜୀବନ ଖଗ
ଭରସା ଏକା ନନ୍ଦ-ନନ୍ଦନ ହେ
ମରୁ ମରୀଚିକା ଆସାର ଆଶାରେ
ଝଡେ ନିଶିଦିନ ମାୟାର ନିଶାରେ
ଆଖି ଥାଉଁ ମୁ ଯେ ହରାଇ ଦିଶାରେ
ଭୋଗି ମରେ ନିତି ବିଷମ ଦଶାରେ
ଅନ୍ଧ ନୟନ ଦିଅ ଅଞ୍ଜନ ହେ
ବଞ୍ଚାଅ ସଦା ଦୁଃଖଭଞ୍ଜନ ହେ ! ।୧।

---

( ୧୨୪ )

ଯେବେ ଜୀବନ ମେଘରେ ଘନାଇଁ ଆସିବ ସଞ୍ଜ
ଯେବେ ମଜୁଳ ମଜୁଳା ଶେଷେ ଶୁଖିଯିବ ସଜ କଞ୍ଜ । ॥ ୦ ॥
(ଯେବେ) କାଳ ବୈଶାଖୀ
ମୁଣ୍ଡ ଦେବ ଆସି
ବିଜୁଳି ହେବ ତା ସାକ୍ଷୀ
ଝୁମରି ଚରଣ ଘୁଙ୍ଗୁର ଘୋଷ ଶ୍ରବଣରେ ମୋର ରଞ୍ଜ ।୧।
(କେବେ) ମାଗିନାହିଁ କିଛି
ମଗା ମଣେ ତୁଚ୍ଛି ତୁଚ୍ଛି,
କହୁଛି ମନେ ଯା ଅଛି
କାଢ଼ି ନେବ ନାହିଁ ଯଷ୍ଟି କରରୁ କବଳଶଣୀ ପଗ ଖଞ୍ଜ ।୨।

---

( ୧୨୫ )

ଗିରିଜା ହରମୋହିନୀ ମା' ଭବ ସାଗର ତାରିଣୀ ॥୦॥
ଶଙ୍କର ହୃଦପରବାସିନୀ
କଙ୍କର ଜନମନ-ତୋଷିଣୀ
ପଙ୍କଜ-ପଦ ଦର ନାଶିନୀ, ସୁଖଦା, ଶୁଭଦା ବରଦେ ।୧।
ମହିଷାସୁର ମର୍ଦ୍ଦିନୀ ମା
ସୁରନର ମୋଦ ବର୍ଦ୍ଧିନୀ
ଚନ୍ଦ୍ର ମଉଳ ଅରଧାଙ୍ଗିନୀ ! ଚଣ୍ଡାସୁର ରଣ ରଙ୍ଗିନୀ
ଚଣ୍ଡୀ ଦଳବଳ ସଙ୍ଗିନୀ, ଫଳଦା, କୁଳଦା ବରଦେ ।୨।
ଶରଣାଗତ ପାଳନୀ ମା
କରୁଣାମୟୀ ଶୂଳିନୀ
ଛବ ତବ କୋଟି ଭୁବନ ବନ୍ଦେ, ରବି ଶଶଧର କିରଣ ନନ୍ଦେ
କବିଶଶୀ ନତ ଚରଣ ବନ୍ଦେ କରୁଣା କର ମା ବରଦେ ।୩।

—o—

( ୧୨୬ )

ମନୁଆଁ ! ପ୍ରେମ କର ତୁ ମନ ସାର ॥ ୦ ॥
ପ୍ରେମ ବନେ ସେ ଯେ ନ ଢଏ ଧରା ରେ
ଶ୍ୟାମର ପ୍ରେମ ଆଧାର,
ପ୍ରେମ ସାଗରେ— ଝରେ ଗିରିଧାରୀ
ପ୍ରେମ ପଥାର କରେ ପାର;
ମନ୍ଦ ସମୀରଣ ଛୁଏଁ ବନରାଜି
ପ୍ରେମ କୁସୁମ ଅନାକାର । ୧ ।

———

( ୧୨୭ )

ଶ୍ୟାମା ! ଭରସା ଭବେ କେ ତୋ ବିନା
ସବଳ ସନ୍ତାନ ମାଗୋ ଫେରୁ ତୁ ଅନା ॥ ୦ ॥
ଜନମର ଅଙ୍କ ପରି
ଜଗତ ଦୁଃଖ ପାସୋରି,
କରି କି ପାରିବୁ କହ ଏ କଥା ମନା ? । ୧ ।
କଳାଧନ ଚଉକନ୍ତି
ଥିବାଏ ସତତ ଗତି,
କୋଳେ ନେ, ମା 'ଦୟାମୟୀ' ବୋଲଉ ତୁ ନା ? ।୨।
ଏ ତିନ ଜଗତେ କାହିଁ
କୁମାତା ଦରଶ ନାହିଁ;
କୁପୁତ୍ର ବୋଲି କି ପାଦେ ଠେଲିବୁ ଜମା ? । ୩ ।
କଵଚଚନ୍ଦ୍ର କରେ ଅଳି
ଭରସା ଏକା ତୁ କାଳୀ !
ଜନମରୁ ଜପାମାଳି, ଭବାନୀ ତୋ ନାଁ । ୪ ।

———

( ୧୨୮ )

ସବଗଲି ହରି, ରାଧା ମୁରଲୀ ଝୁରି
ତା ନାଁରେ ବଇଜ ସାରା ପଡ଼ୁଛି ଦୂରି ॥ ୦ ॥
ଚୋରେ ଯେ କରେ ଆପଣାର
ବୁଡ଼ାଉ ତୁ ଅଥଳରେ ନାଆଟି ତାର
ଦରଫୁଟା ଆଶାର କଳି ପଡ଼ିବ ଝରି ।୧।

ସୁଖ ଯାହାରେ ପାଇ ତୁହି
ସୁଖରୁ ଦୂରେ ସେ ଦୁଃଖ କଳନା ନାହିଁ
ତୋତେ ବୋଲିବି ଏଥିକି ସତେ, ହିପଦହାସି ।୨।
ବୋଲିଜ ତୁ ଇଚ୍ଛାମୟୀ ପରା ?
ସେ ଇଚ୍ଛା କି ତୋର ଖାଲି ଜଞ୍ଜାଳ ଭରା ?
କହି ଶଣୀ କହେ ତୁ ତୋ ଭକତ ଭଗାର ।୩।



( ୧୨୯ )

ଭୁବନ ଭରି ଏ ମଧୁହାସ ଢାଳିଦେଇ
ସାଇନ୍ତି ରଖିଛ କହ କସ ମୋହପାଇଁ ? ॥ ୦ ॥

ମୋହଲଗି ଖାଲି, ସବୁ ତାତି ବାଳି,
ଛଳନାର ମରୀଚିକା,
ବେଦନା ଜଞ୍ଜାଳ, ପ୍ରବଞ୍ଚନା ଜାଲ,
ସବୁ ମୋ ପାଇଁକି ଏକା,
ଏଇକି ବିଗ୍ଭର ସାଇଁ ।୧।

ଲୁହ ଆପିବାର                    ଆଉ ଗନ୍ତାଘର
ନ ମିଳିଲା ପରା କାହିଁ
ଏ ଆଖି ଦୁଇକି                    ସରଜିଥିଲ କି
ଯମୁନା ବାଢ଼ିବା ପାଇଁ,
ଖେଳିବାକୁ ନାଆ ବାହି ।୨।

ଶୁଣ ତେବେ ଶୁଣ                 କବିଚନ୍ଦ୍ର ପଣ,
କହୁଛୁ ଚରଣ ଛୁଇଁ,
ମୋତେ ସଙ୍ଗି ବାଇ             ବଇୁର ନ କର
ଏଇ ଗୁରୁ ଦୁଖ ଦେଇ;
ପଥର ପଗ୍ନ ଏ ଦେଖି ।୩।

—o—

( ୧୩୦ )

ପଝୁଆର ! ଦୂର ସାଗର ତୀର
ବାଇ ଘୋର ଗରଜେ ବଗ ଗୁଇ
ଖରତର ବହେ ତ ସମୀର ।୦।
ତୁଙ୍ଗ ତରଙ୍ଗ ଦୋଳେ ଘରଚଣ୍ଡ
ବଢ଼ଳ ହୁଆ ଚହଲାଇ,
ନାବ ଫଟା ସେ ତ ଟଳଟଳ ଅବିରତ
କେ ନେବ ଖରେ,
କେ, ତୋର ସାହା କହ ରେ ପଝୁଆର !
କେ କରେ ପାର-ଉତ୍ତର ।୧।
ନାହିଁ ଗଗନେ ଶଶୀ, ନାହିଁ ତ ତାରା,
ଏ ନଶିଥ ନପଟ ଅନ୍ଧାର,
ଦାମିନୀ ଚମକିତ, ଅମ୍ବର ଘମାଚ୍ଛିତ
ବରଷେ ଘନ ଘନ ବାର,
ଆକୁଳ ଜବଣଶୀ କାତର ଡାକେ :—
ତରଇ ! ତୁ ନବୁଅ ବଧୀର ।୨।

( ୧୩୧ )

ଜଗା ବନ୍ଧୁଁ ! ଦଗାଦ୍ଧଆପଣ ଗୁଡ଼ି କହ···ରେ ।୦।
ଥକ ଯେଝ ଆରତେ    ଡାକ ମରେ ତୋତେ
ତୁ କ ରଖୁ ତାର ଥପୁ ?
ଟେକ ଚଉବାହା    ଢହ ଲକ୍ଷ୍ମୀ-ନାହା !
ଝୁରିଁ ତୋ ଆଁପଣା ବନ୍ଧ ।୧।
କୂଳବୁଡ଼ା ପଣ    ଖେଳ ଆଚରଣ
କାଳକ ଛୋର କ ନୁହଁ ?
ବାନ୍ଧୁଚ କାଳରୁ    କାଳ ତୁ ହେବାରୁ
ରାଧାର ଝଁଚ୍ଛୁଚ ଲୁହ ।୨।
ଯୁଠ ଜୀଉ ପଣେ    ପଠ ନୁହେଁ ମୁହିଁ
ଠ ପଛେ ତୋର ସେନ୍ହ,
କହେ ଭକ୍ତଶଣୀ    ଶୁଣ କଳାଶଣୀ !
ତୁ ଅଛେ, ଥରେ ଯୁହଁ ।୩।

---

( ୧୩୨ )

ନୀପଚରୁ-ମୂଳଆ    ଝୁରୁ ଗୁଞ୍ଜ-ମାଳଆ
ଶିଖୀ-ଚୂଳଆ ସେ କାଳଆ,
ରାଧା-ପ୍ରୀତି-ପାଳଆ    ବ୍ରଜ-ଗୋପ-ମେଳଆ
ଗିର-ଟୋଳଆ ସେ ଧୂଳଆ ହେ,
ଜଞ୍ଜାଳଆ···

ଯଶୋଦା-ଜନମା-କୋଳଆ ନାଗର କାଳନ୍ଦୀ-କୂଳଆ
ହେ ପୀତ-ଦୁକୁଳଆ ନାଗବର-ଦଳଆ
କବିଚନ୍ଦ୍ର ତୋ ପା' ତଳଆ ।

( ୧୩୩ )

ତୁମର ଚରଣ ତଳେ—
ମାନ ଅପମାନ ଯେତେ ଜୀବନର
ଚାଳିଦେଲି ଆଖି ଜଳେ ।୦।
ଯାହା ମୋର ମନ ଲୋକ ବୁଝେ ଆନ,
ଦୋଷ ଥାଇ ଛଳେ ବଳେ,
ଶ୍ରେଷ୍ଠ ମନ ଘେନ ଯେ ଥିଲେ ସେ ଆଉ
ଦେଖୁଥାଅ ଦେନ ଡୋଳେ ।୧।
( ଗୁରୁ ତୁମ ପଥ ସୃଷ୍ଟି,
ଭରସାରେ ନାଥ ଚଳେ,
ବିବେକର ତୁମେ ବିବେକ ଗୋସାଇଁ !
ସଞ୍ଚରିବି ଠେଲିଦେଲେ ।୨।
ସେବକ ତୁମର ଗରବଟି ମୋର
ରହିଥାଉ କାଳେ କାଳେ,
ଆନ ପଦେ କାହିଁ ନଇଁଥ ନୁଆଇଁ
କବିଚନ୍ଦ୍ର ମଥା ଭଲେ ।୩।

( ୧୩୪ )

ମା ଗୋ ! ଜନମଜଗି ଦୋଷ କ ମୋର
(କହ ଦୋଷ କ ମୋର) ॥୦॥
ତୁ ପରା ଜନମା ଶ୍ୟାମା
ସନ୍ତାନ ଦୁଃଖ ହରୁ ମା,
ବାରଣ କ କରପାରୁ ନୁହେ ମୁଁ ସନ୍ତାନ ତୋର ।୧।
କୁପଥେ ଯେବେ ମୁଁ ଯାଏଁ
କଏ ମା, ପଥ ଦେଖାଏ
ହେଲ ବୋଲ ପାତକୀ ମୁଁ ତୁ କଲୁ ପର ? ।୨।
ମିଛେ କ ଜନମା ଉମା ଖୋଲି ତୁ କହ କହ ମା
ନ ଝରେ କ ତୋ ବୁକୁରୁ ଅମିୟ ଧାର;
କବିଚନ୍ଦ୍ର ମନ୍ଦମତି, ହେଲେ ତ ମା ତୋ ସନ୍ତତି
ନୁହେକ, କହ ମା' ପାଦେ ମିନତି ତାର ।୩।

———

( ୧୩୫ )

ଶ୍ୟାମା ଚରଣ ତଳେ ଶରଣ ଦେ ମା !
ଶିବେ ସର୍ବାର୍ଥସାଧିକେ ସକଳ ମଙ୍ଗଳମୟୀ
କରୁଣା କର ଜନମା ! ହିଜଗତେ ଶକ୍ତି ତୁହି,
ମିନତି ଶୁଣ ମା ହର-ବାମା ।୧।
ନ ଜାଣେ ଭକତି ମା ଗୋ ! ନ ଜାଣେ ପୂଜନ ସ୍ତୁତି
ନଶି ଦନ ଏ ଜୀବନେ କରିଛି ଯେତେ ଅନୀତି
ଜନମା ତୁ ନାହିଁ କ ମା କ୍ଷମା ।୨।

କୁସନ୍ତାନ ଭସ ଭବ କୁମାତା ଯେ ଅସମ୍ଭବ
ଜନନୀ ଅଙ୍କରେ କଗୋ ! କୁପୁତ୍ରର ନାହିଁ ଠାବ
କହଣଣୀ ମାତୃହଦୟ କ ମା ! ।୩।

— — —

( ୧୩୬ )

ଶାରଦା ଦେବ ପ୍ରଣତ — ନାସପୂଣୀ ସାରଦ
କୁନ୍ଦ କୁସୁମ ବରଣୀ
ଅନ୍ଧ ତମସା ବାରିଣୀ···ଜନନୀ !
(ପଦ) ଶ୍ୱେତ-କମଳ-ଦଳ-ବାସିନୀ
କାଶ-ଧବଳ-ଦର-ହାସିନୀ,
ସୁର-ନର-ମୁନି-ଜନ-ବନ୍ଦନୀ
ବୀଣା-କର-କର-ବାଦନୀ
ଶୁଭଦା-ସୁଖଦା-ବରଦା !

— — —

( ୧୩୭ )

ଚନ୍ଦନ-ଚର୍ଚ୍ଚିତ ସୁନ୍ଦ ଚରଣ ତଳେ,
ମଞ୍ଜୀର ରୁମ୍ ଝୁମ୍ ବାଜେ ।
ନଟବର ବେଶ ସାଜେ ।୦।
ରାଧା-ମନ-ମନ୍ଦର-ଚର-ବନ୍ଦନା
ଗୋପୀଜନମନ-ନନ୍ଦନ ଚନ୍ଦନ
ବୃନ୍ଦାବନ-ବନସ୍ଥ ସେ ନାଗର
ଷଷ ଋତୁ ନକଟ ବସନ୍ତେ ।୧।

ପୀତ ବସନ କଟୀ କିଙ୍କିଣୀ ଶୋଭନ
କଣ୍ଠେ ବନଫୁଲ ହାର କ ଲୋଭନ !
ଭଙ୍ଗି ତ୍ରିବଙ୍କିମଠାମ ବମୋହନ;
ଭକ୍ତଚିତ୍ତ ହେଉ ମଚେ ଲାଜେ ।୨।
ବ୍ରଜପୁର-ମଣ୍ଡନ ହେ ଘନ ସୁନ୍ଦର !
ବାମ କରେ ଧର ଗିରିବର ମନ୍ଦର
ଦୁଃଖ ଭାର ହର, ହେ ମୁରଲୀଧର !
କନ୍ଦର୍ପଶଣୀ ତବ ପଦ ମାଜେ ।।୩।।

———

( ୧୩୮ )

ଏତିକ ମନର ସାଧ-
ଝରେ ଯେବେ ଆଖି ଲୁହ ଧାର
ତେବେ, ଧୋଉ ସେ ତୁମର ପାଦ ।।୦।।
ଯେବେ, ଦୁରୁଦ୍ଦିନ ଘନ ଘୋଟେ
ଯେବେ, ଚଡ଼କରେ ବୁକୁ ଫାଟେ,
ତେବେ, ସୁଖ-ଶେଜେ ଶୋଇଥାଇ
ଖାଲି, ଥରେ ଥରେ ବଂଶୀ ଗୁଣ୍ଠି
ତୁମେ ଭାଙ୍ଗି ଅଧା ଅଧା ନାଦ ।୧।
ଯିଏ, ବୁଝିବାର ବୁଝୁ ଯାହା
ନ କ, ଟେକୁ ଝବା କନ୍ଥୁ ଆହା !
ମୋର, ଟିକଏ ଶୋଚନା ନାହିଁ
, ଅସାର ଶୁଣିବା ପାଇଁ
ହେଉ ସମାନ ମୋ ହସ-କାନ୍ଦ ।୨।

ଯେବେ, ନୁଆଇଁ ଦେବ ମୋ ମଥା
ଯେବେ, ଲୁହାଇବ ଗୁଡ଼କଥା,
ତେବେ, ଶରଣ ଥାଉ ନଈ
ଏକା, ତୁମରି ଚରଣ ଛୁଇଁ
ସହୁ କୋଟିଜନ ଅପବାଦ ।୩।

---

( ୧୩୯ )

**ଜାଗ, ଜାଗ ଶଙ୍କର, ଭୂତପତି ଚନ୍ଦ୍ରମୌଳି !**
ବିଭୂତି-ବିଭୂଷଣ ହର ଭବ ଦୂଷଣ
ଜାଗ ଜାଗ ଗଳାମାଳି ।୦।

ତାଣ୍ଡବ ପଣ୍ଡିତ ! କାମବାଣ-ଜିତ
ହେ ଶିବ ସୁନ୍ଦର, ତ୍ରିଭୁବନ ଅର୍ଚ୍ଚିତ !
(ପଦ୍ମ)
ଜାଗ ଜାଗ ଜଗଦୀଶ୍ୱର ଈଶ୍ୱର !
ଜାଗ ଜାଗ ହର ନାଗ ପ୍ରୋଟଗଣ୍ଡ !
ଜୟ ପାର୍ବତୀ ବର, ହେ ଗଙ୍ଗାଧର !
ଜଦୟ-ଝୁଲ କରମାଳି ।୧।

---

( ୧୪୦ )

**ଦେ'ରେ ପାରେ ଲଗାଇ, ତରାଇ ।୦।**
ନୀଳ ଯମୁନା ନୀର
ପବନ ବହେ ଖର
ତରୀ ଟଳେ ଥର ଥର
ଆସେ ଘନ ଘୁଇ ।୧।

ଅଗତ ଯାମିନୀ
ଚମକଇ ଦାମିନୀ
ଘନ ଅନ୍ଧାରେ ଅପଗତ ଚନ୍ଦ୍ରମା
ସୁଖ-ସାଥୀ ଦୂରେ
ସାହା ମୋର କେ ଜଣୁନାହିଁ ।୨।

---

( ୧୪୧ )

ହରି ! ନେଲ ହରି ଏ ଦେହ ନୟନ ତାରା
ଅନ୍ଧ ନୟନେ ତବ ଯୋଖିବାକୁ ସତେ ପରା ! ।୦।

ମନେ କି ଭାଳନ୍ତି ପରମମ ଭଗବାନ !
ଏଇ ଘୋର ଦୁଃଖେ ଟଳେ ମୋର ମେରୁ-ମନ
ତୁମେ କହିବାର ଦୂରେ ଥାଉ ମୁଁ ଯେ
ଜାଣେ, କଷଟିରେ ମାରୁ ଗିଲ ।୧।

ମାଇଘାର କେତେ ସନ୍ଧ୍ୟପାରେଁ କେତେ ଦେଖ
କଏ ବଢ଼, କଏ ସାନର ହେଉ ପରଖ
ଆସୁ ଆନ କେହୁ ତରଳ ତନ୍ତ୍ର
ତେବେ ସିନା ହେବ ଈଶ୍ୱର ସାର ।୨।

---

( ୧୪୨ )

ନସରେ ମୋ ଝନ, ଘନଶ୍ୟାମ ! ଘେନ ॥୦॥
ଚରଣ ସଙ୍କେଜେ ଢଅ ତୁ ଶରଣ
ଶ୍ୟାମ ନବଘନ, ହେ ଜଗମୋହ
କାମ-ହସ୍ତ ତନୁ, ଘେନ ବନ୍ଦନ ହେ ॥୧॥
ସ୍ବଚ୍ଛ ଚରଣ ଯୁଗ ନୂପୁର ଶୋଭନ
ଫୁଲ୍ଲ କମଳ ଦଳ, ଗଞ୍ଜନ ହେ !
ସ୍ବର-ନୟନ-ଧନ ହେ ବ୍ରଜ-ମଣ୍ଡନ !
କଢଶଶୀ ଖେଦ କର ଖଣ୍ଡନ ହେ ॥୨॥

---

( ୧୪୩ )

ଚଳ୍ ରେ ପାନ୍ଥ ! ଦୁନିଆଁ ଦରିଆ ଲଙ୍ଘି
ଜନ୍ମ ଶ୍ରାବଣ ଭଙ୍ଗା ଆତ୍ମାକୁ ସଙ୍ଗୀ ॥୦॥
ଦରିଆ ସେପାରି ନଗ କଇଲାସ ଚୂଳେ
ଏଇ ଯେ ଧୂମର ଘନ କୁଣ୍ଡଳ ଖେଳେ;
ହର ଶିର ଜଟା ମେଳେ
କୋଟି ତାରା ଆଖି ତଳେ
ଝଞ୍ଜା ଠେଲି ତୁ ଚାଲ୍ ରେ ପଥିକ ! ଧରମର ପାଲ୍ ଟାଙ୍ଗି ॥୧॥
ଅନ୍ଧ ନୟନେ ଆଜ ରେ ଜଳନ୍ତି ଶିଖା
ଦୂରେ—ବହୁ ଦୂରେ ଦଣେ ରେ ଚନ୍ଦ୍ରଲେଖା;
ମରଣର ସେ ଯେ ସଖା
ଶିଶୁ ଚନ୍ଦନ ରେଖା
ଘେନବୁ ଚାଲ୍ ରେ ଅନ୍ଧ ପଥିକ !
ଲୁହାର ଦୁଆର ଭାଙ୍ଗି ॥୨॥

---

( ୧୪୪ )

ସାରା ଜୀବନଟା ଜାଣେ ଅପରାଧମୟ
ତେବେକେ ପ୍ରଭୁ ହେ ! କହୁ ନାହିଁ କ୍ଷମା ଦିଅ ।୦।
ଜନ ମୁଖ ବୋଲେ ଦୟାର ସାଗର
ସାଗର କି ନାହିଁ ପାଲଟେ ପଥର ?
ସୁଧା ସ୍ୱର୍ଣ୍ଣେ କହ ସମ୍ଭବଇ କାହୁଁ
ବିଷ କଣା ନିରଦୟ ।୧।
କ୍ଷମା ଦେଲେ ଦିଅ, ନଦେଲେ ନ ଦିଅ
ମାଗିବି କାହିଁକି ମଥା ପାତି, କହ ?
କାହା କୁହାବୋଲା, ନ ମାନିବାରୁ ତ
ତୁମ ନାମ ଇଚ୍ଛାମୟ ।୨।
ଇଚ୍ଛାରେ ତୁମରି ସବୁ ଯେବେ ଚଳେ
ଅପରାଧ ମୋର ହେଲା ଯାହା କଲେ
ସେ କି ତୁମ ଇଚ୍ଛା ବାହାରେ କଲି ମୁଁ
ଏଇତକି ମୋତେ କହ ।୩।
ଭକ୍ତଚନ୍ଦ୍ର ବୋଲେ :— କରି ତ କରାଅ
ଏଥିକି କାହିଁକି ଜନେ ଦୋଷ ଦିଅ ?
କାହିଁକି ଏ ଖେଳ ନିର୍ଦ୍ଧନ ସତେ
ଏଥିରୁ କି ସୁଖ ପାଅ ? ।୪।

---

( ୧୪୫ )

ଆଜ ରେ ନବ ସାଜରେ ହେରି ଜଗବନ୍ଧୁ ସଜରେ
ନନ୍ଦଘୋଷ ରଥେ ବିଜେ ତେଜି ଭୁଜ ଶେଯରେ ।୦।

ପତିତପାବନ ବାନା, ଉଡ଼ଇ ଗଗନେ ଅନା
ବର୍ଷେ ଆଷାଢ଼ ଧାରା, ଚନ୍ଦ୍ରିକ ନାହିଁ ପସରା
ପୁଲକ ଭରେ କୋଟି କୋଟି ନାରୀ ନର
କଣ୍ଠେ କଣ୍ଠେ ଝଙ୍କୃତ ସଙ୍ଗୀତ ମଙ୍ଗଳ—
"ଦୁଃଖ ନାଶନ—ଜଗନ୍ନାଥ ଭଜ ରେ ।"
(ଘୋଷା)

ଛଜସ୍ଥ ରବ      କଳା ଶଶୀମୁଖ
ନିରେଖି ହରେ ଜଗମନ ଦୁଃଖ
ବନ୍ଦ ମାନସ ବୃନ୍ଦ ପଦ ରଜ ରେ ।

———

( ୧୪୭ )

ରଖିବ କି ସତେ ମିନତି ମୋହର ଦିଅଁ,
ଚରଣ ଧରୁଛି କହ, ସତ ମୋତେ କହ ।୦।
ଜାଣୁଛି ତୁମେ ଗୋ ମନୁଆଁ ଠାକୁର
ଇଚ୍ଛା ଯେବେ ଯାହା ତାହା ତୁମେ କର;
ଇଚ୍ଛା ବଦଳକୁ ସାଇଁ
ହେନେ ହେଲେ କହୁ ନାହିଁ,
କରଯୋଡ଼ି ପଡ଼େ ଅଳି ମୋର ପଦେ
ଝରାଇ ଆଖିରୁ ଲୁହ ।୧।
ଯେତେ ଜାତି ଦୁଃଖ ଅଛି ସନ୍ତାପରେ
କଢଣୀ ମାଗେ, ଦିଅ ଶିର ପରେ

ଚନ୍ଦ୍ରିକ ନାହିଁ ଖାତର
ଜଣାଏଁ ଏତେ ମାତର :—
ଜନମେ ଜନମେ କବ କଲପନା
କରମେ ଲେଖି ନ ଥଅ ।୨।

———

( ୧୪୭ )

ମୁରଲି !
ସେ ସୁର ଶୁଣେନା, ଯେ ସୁରେ ଭୁଲିଲା ରାଧା ।୦।
ଭଗ୍ନ ଦଶାରେ, ଘୋର ଦଶାରେ
ମାନସ ନୟନେ କଜ୍ଜ୍ୱଳ ଉଦେ ଅଧା
ମାନେନା ସ୍ୱରଶ୍ରଣୀ ଗୁରୁ ଗୁରୁ-ବାଧା । ୧ ।
ସଞ୍ଜଯେବେ ଆସେ, ଜୀବନ ଆକାଶେ
କୁଞ୍ଜ ଦୁଆର ଭୁଲି ରାଇ ନାମ ସଧା
କବଶଣୀ ମାଗେ, ଶ୍ୟାମ ସୋହାଗେ,
ମରଣ ଦୁଆରେ ମୋର ଢାଳ ସୁର ସୁଧା । ୨ ।

———

( ୧୪୮ )

ତୁମେ ନାଁ ଦେଇଛ କୋଇଲିରେ କୁହୁ
ଫୁଲରେ ଦେଇଛ ଗନ୍ଧ,
ଝରଣର କୂଳେ ତୁମେ ନାଁ ଦେଇଛ
ଲହସ୍ତ ନୃତ୍ୟ-ଆନନ୍ଦ ।୦।

ଅପରାଧ ମୋର ଜାଣ,
ମୋ ଜୀବନେ ଭରି ବିଷ,
ଆଖି ଥିଲେ ମୋର ଥାନ୍ତି ଲୁହ ଧାର
ଭରିଦେଇ କଲ ଅନ୍ଧ ।୧।
ତୁମେ ନାଁ ସବୁରି ପିତା,
ତୁମେ ନାଁ ଜଗତ ଧାତା,
ଘଟର-ଅନ୍ତର କାହିଁକି ଠାକୁର !
ମୋ ଠାରେ ସାଧିଲ ବାଦ ।୨।
ମୋହନ ବେଳକୁ ଏକା,
କାନରେ ପଥର ଠଙ୍କା,
ସାଗର ମଝିରେ ଅନନ୍ତ ଶେଯରେ
ଦେଖ କଣଣୀ କାନ୍ଦ ।।୩।

---

( ୧୪୯ )

ଦେବୀ ଗୋ...ମହିଷ ସୁର-ମର୍ଦ୍ଦିନୀ,
ଦେବୀ ଗୋ...ମହେଶ-ମୋଦବର୍ଦ୍ଧିନୀ,
ପଦ୍ମଗନ୍ଧ-ପ୍ରସୂନ-ମାଳିନୀ ମା ଶ୍ମଶାନ-ବିଳାସିନୀ
କର ଦୟା ହୀନେ ସିଂହ-ବାହିନୀ ହର-ହୃଦୟ-ପର-ବିହାରିଣୀ ।୧।
ଦେବୀ ଗୋ, ଜନସ୍ତୁ ତ ପ ହାରିଣୀ
ବରଦା, ସକଳ ଦୁଃଖ ବାରିଣୀ
ଚଣ୍ଡୀକେ ନରମୁଣ୍ଡ-ମାଳିକେ ଚଣ୍ଡ-ମୁଣ୍ଡ-ବିନାଶିନୀ
ଶକ୍ତି-ରୂପିଣୀ ଶମ୍ଭୁ-ମୋହିନୀ ପ୍ରଣତ-ଜନ ହିତକାରିଣୀ ।୨।

ଦେଖା ଦେଗୋ, ଶରଣାଗତ-ପାଳନୀ
ଶୁଭଦା, ଜଗନନ୍ଦନୀ, ଶୂଳିନୀ
ଘୁମୁରେ ତୋର ତର-କଙ୍କର ମାଗେ କବି-ଶଶୀ ତାରିଣୀ
ଅନ୍ତେ ଦିଅ ପଦ୍ମ ପ୍ରାନ୍ତେ ଜନନୀ ତୁ ସ୍ଥାନ ହି ଜଗତ-ବନ୍ଦିନୀ ।୩।

———

( ୧୫୦ )

ଚନ୍ଦନେ ଦେଲ ଗନ୍ଧ, ସୁମନେ ସୁବାସ ଭରିଲ ଯେବେ
କିଏ କରୁ ଥିଲା ଅନ୍ଧ, କାହିଁ ପାଇଁ ଏତେ ସରଜନା ତେବେ ।।୦।।
କିଏ କହୁଥିଲା ନେଳୀ ମେଘ କୋଳେ
ଛଡ଼ିତ ଜଡ଼ିତ ପାଇଁ,
କିଏ କହୁଥିଲା ମଧୁ-ମାସିଆ ସେ ପିକ ପିବ କୁହୁ ଗାଇ;
ତାରା ଯେବେ ଦେଲ ଗଗନେ
ଚନ୍ଦ୍ରକୁ ଥୋଇଲ କି ମନେ,
କୁସୁମ ନାଗର ଅଳି କଣ୍ଠରେ ଗୁଞ୍ଜ ଅଳି କିଆଁ ଶୁଭେ
ଶ୍ୟାମ ମୁରଲୀକି ମନ୍ତ୍ର ଦେଲ କିଆଁ ରାଇଙ୍କ ଗଳରବେ ।୧।
ଯେତେ ନଟକୂଟ ତୁମର ସବୁ ତ ଅତି ଅଲାଜୁକପଣ,
ଆପେ ସବୁ କରି, ପଛ ଶିରେ ଅଠା ବୋଳିବାର ଭଲ ଜାଣ,
ସବୁଠାରୁ ବଡ଼ ଚୋର
ମନଚୋର ତୁମେ ମୋର,
ତେବେବି ତୁମକୁ କାହିଁକି କହ ତ ପାସୋରି ନପାରେ କେବେ
ଅନ୍ଧାର ଭିତରେ ଦୀପ ଜାଳିଦିଅ, କବିଚନ୍ଦ୍ର ଅନୁଭବେ ।୨।

———

( ୧୫୧ )

ଆଖି-ଝର ଯେବେ ସୁଖ ପାଅ, ସତେ
କନ୍ଦାଅ ଶୋ, ତେବେ ମନଇଚ୍ଛା ଯେତେ ।୦।
ହୃଦରେ ରଖ ଗୋ ବାଦଲ ଦେଖାଇ
କଳାଘନ ନେଇ ଶଶୀରେ ଘୋଟାଇ;
ଫୁଲ ପାଶୁଁ ବଞ୍ଚ ଅନଳରେ ପେଷାଇ
ଆଶା ବାଲୁଚରେ ଧୁଆଅ ଗୋ ମତେ ।୧।
ମୋ ଗତି ସବୁ ତୋ ! ସପନରେ
ମନ ସାଧ ଲୁଟୁ ଗୋପନରେ,
କୁଳହାସ ତଟ ଯୁରୁ ଉଇଁଷରେ
କବିଚନ୍ଦ୍ର କରଯୋଡ଼ି ମାଗେ ଏତେ ।୨।

———

( ୧୫୯ )

ନୟନ ମାର କି ସତେ ଏତେ ସୁଖ ପାଅ ?
କହ ନଟବର ! ତନୁ ଛୁଇଁ ସତ କହ ।୦।
ନୟନେ ଯମୁନା ଗଢ଼ି ଝୁରଇ ଗୋ ଯେବେ ରାଧା
ବରଜ ବଜାରେ କେତେ ସହିଲା କଳଙ୍କ ବାଧା
ତୁମ ଲାଗି ସତେ କେତେ ପଥର ନ କଲା ଦେହ
ଶୁଣିଛ କି ତା ଗୁହାରି, ତନୁ ଛୁଇଁ ସତ କହ ।୧।
ହସି କେ ପାରୁଛ କାହିଁ—ତମ ପଦ ତଳ ଗ୍ଲାଇ
ଧରା ଦେଇ ଦେଇ ତୁମେ ଧରା ପରା ବଞ୍ଚ ନାହିଁ
ସୁଖରେ ତୁମେ ଚରଣ କାହାକୁ ଦେଇଛ କାହିଁ ?
ନ କାନ୍ଦ କେ ଭେଟିଛୁ ଦେ, ତନୁ ଛୁଇଁ ସତ କହ ।୨।



କବିଚନ୍ଦ୍ର, ପଞ୍ଚରୁଛି ବାପ ତୁମେ ମୁଁ ଯେ ପୁଅ
ଅନବରତ କାନ୍ଦ ମରେଁ କପଣ ଏ ଦୁଃଖ ସହ ?
ଯେତେ ତ ଡାକଲେ ଦୂରେ ଦୁରେ ଅପସରି ଯାଅ
ଦୟା କ ପାସୋରି ଦେଲ, ତନୁ ଛୁଇଁ ସତ କହ ।୩।

---

( ୧୫୩ )

ତୁମରି ଆଶାରେ ମୋର ଅସରା ନଶି ବାସର,
ଆସିବ କେବେ ମୋ କୁଞ୍ଜ ଦୁଆରେ
ସତ କହ ନଟବର ।୦।

ନବ-ଜ୍ୱର ନଶିସାର,
କେତେ ଡାକ ଡ.କ ଫେରିଲ ଫୁକଅା ତାର;
ପଛେ ତୁମେ ଥାଇ, ଡାକ ଦେଇ କହ୍ନାଇ
ଫେରାଏ ବଇଁଶୀ ସୁର ॥୧॥

ଦୁଆ ର ମେଲାଇ ପର,
ସ୍ବର୍ଣ୍ଣ ରକ୍ତ କେତେ ଝରଏଁ ନୟନଧାର;
କେଉଁ ଭାଙ୍ଗି ନାହିଁ, ହସେ ସେ ମୋ ଗ୍ଲାଇ
ଘୁଞ୍ଚି ରହ ଦୂରୁଁ ଦୁର ॥୨॥

ଗୁନ୍ଥି ମାଳଣ୍ଟ ଝର,
ପଖାଳି ରଖିଛି ଡାଳ ମୁଁ ନୟନ ଧାର,
ସଜା ଶେଯ ଫୁଲ ମଉଳିଲା ମୋର
ଏକ କଲ ମନ ଚୋର ? ॥୩॥

---

( ୧୫୪ )

ଧୀରେ, ଧୀରେ' ଧୀରେ —

ଯମୁନା ତୀରେ···ଶ୍ୟାମ ଯମୁନା ତୀରେ,
ମୁରଲୀ ବଜାଅ ଧୀରେ, ଧୀରେ, ଧୀରେ, ॥୦॥
ଯେ ସୁରେ ସରସ ରାଧା ବରଜପୁରେ
ଯେ ସୁରେ ସାରସ ରାଧା ସରମ ସରେ;
ଯେ ସୁରେ ବାଉଳୀ ରାଇ
କୁଳ ମାନ ମାନି ନାହିଁ,
ସେ ସୁରେ, ସେ ସୁରେ, ସେ ସୁରେ
ମୁରଲୀ ବଜାଅ ଧୀରେ, ଧୀରେ ॥୧॥
ଯେ ସୁରେ ଯମୁନା ତୀରେ ଲହରୀ ଉଠେ
ଯେ ସୁରେ ନୟନେ ନୀର ପର୍ବର ଛୁଟେ;
ଯେ ସୁରେ ସଂଗୋପନେ,
ଧାଏଁ ରାଧା କୁଞ୍ଜବନେ,
ସେ ସୁରେ ସେ ସୁରେ ସେ ସୁରେ
ମୁରଲୀ ବଜାଅ ଧୀରେ, ଧୀରେ ॥୨॥
ଯେ ସୁରେ ଚନ୍ଦ୍ରା କାନ୍ତ ସପନସାଥୀ
ଯେ ସୁରେ ଚନ୍ଦ୍ରାବଳୀ ବିତାଏ ରାତି,
ଯେ ସୁରେ ଝୁରି ମରି
କାନ୍ଦ ଶଶୀ ଯିବ ଢଳି
ସେ ସୁରେ, ସେ ସୁରେ, ସେ ସୁରେ
ମୁରଲୀ ବଜାଅ ଧୀରେ, ଧୀରେ ॥୩॥

———

( ୧୫୫ )

ଯମୁନା ତୀରେ, ବନ୍ଧୁ, ମରଣ ଝୁରେ ॥୦॥
ଯେ ଯାହା କହିବ କହୁ, ଅପବାଦ ଯାହା ଦେଉ
ମାନ ଅପମାନ ସବୁ ଭସାଇଲି ଆଖି ନୀରେ;
ଖାଲି ମରଣ ଆଶାରେ ବନ୍ଧୁ !
ସେଇ ଯମୁନା ତୀରେ ।୧।

ଅଭିସାରେ ନାହିଁ ଡର
ଅବାଟର ନାହିଁ ଡର
ପଣସ୍ତ ନାହିଁତ ମୋର, ଚନ୍ଦ୍ରକ ଯେବେ ଲୋ ଝୁରେ;
ଖାଲି ମରଣ ଆଶାରେ ବନ୍ଧୁ !
ସେଇ ଯମୁନା ତୀରେ ॥୨॥

କୁସୁମରେ ଆଶା ନାହିଁ,
ଝୁରେ ବାସନ୍ତିକ ପାଇଁ
ଦୂରୁ ଦୂରୁ ଭ୍ରମ ଘୁରି, କହଣଶୀ ଅଛି ଲୁହିଁ
ଖାଲି ମରଣ ଆଶାରେ ବନ୍ଧୁ !
ଯମୁନା ତୀରେ ॥୩॥

---

( ୧୫୬ )

ଫୁଲ ସଞ୍ଜେ, ଯମୁନା ତୀରେ
ମଧୁ ବଂଶୀ ଅଧରେ ଧରି—
ଗାଇ କଣୋସରେ, ଡାକ ଘନଶ୍ୟାମ ବାରେ ।୦।

ଯେବେ ଶରତ ସ୍ବନ୍ଦ ଯିବ ଫେରି
ଘନ-କୁଆଶା ଆସିବ ଢଗ ଘେରି,
ଗନ୍ଧ ଚନ୍ଦ୍ରକ-ଚୂଳ ଆଗ୍ର ଝୁଁଟକୁ
ଝୁଲି, ଫୁଲ ଫୁଲ୍କି ମଳୟ ସମୀରେ । ୧ ।
ଯେବେ ଜୀବନ ଶେଯେ ଛୁଇଁ ସାତ
ସ୍ଥାଇ ଥରାଇ ଦେବ ତମା ସ୍ଥାତ ନନ୍ତ
ଝରି ଦାମିନୀ ମାରିବ ଆଖି ଠାରି
ତୁମେ ଶ୍ୟାମ ନ କରିବ ସାଚପରି
ବରଷି ଦେବ ତାଳ ସୁଧା-ଧାରେ । ୨ ।
ଯେବେ କମ୍ପିବ ଝଞ୍ଜା ଚରସ୍ବାଇ
ଶିରେ କରକା-ସ୍ଥିଣି ବରଷାଇ
ତୁମେ ନଉକା ନେବଟି ଏକା ବାହ୍ବି
କଲଶଣୀ ମାଗେ ରଙ୍ଗ ଚରଣରେ । ୩ ।

---

( ୧୫୭ )

ମୁରଲିଆ ହୋ ! ମୁରଲି ବଜା,
ବଇଜ ଗୁଆଳ ମାନ ମନ୍ଦଲ ଭଜ
ଯମୁନା ପୁଳକେ ବସି          କଳାଶଶୀ ! ଧରି ବଂଶୀ
ସାଗ ଶଶୀ-ଦସା ନଣି, ଫେରି ତୁ ନ ଯା ।୧।
ଯାଉ କୁଳ, ଯାଉ ମାନ          ଦଳୁ ପଛେ ଗୁରୁ-ଜ୍ଞାନ
ସାଥୀ ମୋର ଥାଅ ତୁମେ ବଇଜ ଭଜା ! ।୨।

ଚଲପଥ-ଧୂଳି ଚୋର ସୁନ୍ଦର ମୁରଲୀଧର !
ନିତି କୁଞ୍ଜବନେ ମୋର କୁସୁମ ସଜା ।୩।
ନିଶି ଯେବେ ହେବ ଶେଷ ଆଣି ଦିଅ ପୀତବାସ !
ମନ୍ଦିର ଦୁଆରେ ମୋର ଯୋଗିବ ପୂଜା ।୪।

---

( ୧୫୮ )

ଯମୁନା ତୀରେ କେ ବଜାଏ,
ମୁରଲୀର ସୁରେ ବନ ଛାଏ ।୦।
କୁଞ୍ଜ ବନୋବିଆ ମୋହନ ରାଏ
ସଖି ମତି ଜାତି ହରାଏ ।୧।
ମନ-ହରା ବଂଶୀ ଧର ଥରେ ବନ୍ଧୁ !
ରବ ଛନ୍ଦ ଛପି ଛପି ଯାଏ ।୨।
ଜୀବନର ସଞ୍ଜେ, ମରଣ ନିକୁଞ୍ଜେ
କବିଶଶୀ ସେହି ସୁର ଗାହେଁ ।୩।

---

( ୧୫୯ )

ନାଚ ନୟନେ ମୋ କୁଞ୍ଜ-ବିହାରୀ !
ନନ୍ଦ ସୁନନ୍ଦନ ଗିରିବରଧାରୀ ।୦।
ଗୋପୀଜନ-ଜୀବନ, ହେ ମଧୁସୂଦନ
ବାଙ୍କ-ନୟନ ମନ-ମୋହନକାରୀ
ମାଧବ ମଧୁବନ-ଚାରୀ ।୧।

ନବନୀତ ଚୋର ହେ ନଟ-ନାଗର !
ନନ୍ଦିତ ନବଘନ-ଠାମ ସୁନ୍ଦର
ରତି ମରେ ରୂପ ନିହାରି ।୨।

କରୁଣାଶୀ ବନ୍ଦନ କଂସ ନିସୂଦନ !
ଚରଣେ ଠାବ ଦିଅ ହେ ଦଇତାରି !
ଜୟ ଜଗଜନ-ହିତକାରୀ ।୩।

---

( ୧୬୦ )

ଚରଣ କମଳ ବନ୍ଦେ, ହେ ରସରାଜ !
ରସରାଜ ନବ-ନଟବର, ଗୋପିକା-ଧନ-ମନ-ଚୋର
କାମ ରୂପ ଏ ତିନି ଭୁବନ ନନ୍ଦେ ।୦।
ବନଫୁଲ ବନମାଳା ନବଘନ ବୁକେ ଦୋଳେ
ଗଳାମୋତି ସଙ୍ଗେ ତାରି ଝୁଲ ଝୁଲ ଝୁଲ ଖେଳେ
ନାଚ ଥରେ ଗିରିଧାରୀ ! ତାଥେଇ ତାଥେଇ ଛନ୍ଦେ ।୧।

ଯୋଗୀଜନ ବନ୍ଦିତ ହେ ! ଶିଖି-ଶିଖା ଶିର ପରେ
ଅଳକେ ତିଳକ ଶୋଭା ଗୋରଚନା ମକରୀ ମେଳେ
ଅଧର ମୁରଲୀ ଡାକେ—ବରଜ-କିଶୋରୀ ରାଧେ ।୨।

---

( ୧୬୧ )

ଶ୍ୟାମା, ଚରଣେ ତଳେ ଶରଣ ଦେ'ମା
ଶିବେ ସର୍ବାର୍ଥ-ସାଧିକେ
ସକଳ ମଙ୍ଗଳମୟୀ ।
କରୁଣା କର ଜନନୀ, ହେ ଜଗତ ଶକ୍ତି ତୁମ୍ଭ
ମିନତି ଶୁଣ ମା ହର-ବାମା ।୦।
ନ ଜାଣେ ଭକତି ମା ଗୋ
ନ ଜାଣେ ପୂଜନ ସ୍ତୁତି
ନଶ ଧନ ଆଚରନ୍ତି ଜୀବନେ ଯେତେ ଅନୀତି
ଜନନୀ ଗୋ, ନ ଦେବୁ କି କ୍ଷମା ? ।୧।
କୁସନ୍ତାନ-ଭୟ ଉବ କୁମାତା ଯେ ଅସମ୍ଭବ
ଜନନୀ ଅଙ୍କରେ କି ଦେ ଗ
କୁ ପୁତ୍ରର ନାହିଁ ଠାବ,
ଭବଶଣୀ ମା ଦୟା କି ମା ।୨।

---

( ୧୬୨ )

ତାରା ପରମେଶ୍ୱରୀ,
ହେ ତାପ-ହାରିଣୀ ! ଶେଷେ ଶରଣ ମାଗେ ଶଙ୍କରୀ ।।୦।।
କେତେ ଗୋ ଆଜି ଜଗତେ
ଜଳାଇବୁ ମା'ଆ ସତେ ?
ମୋର କଷ୍ଟଥିଲେ ଯେତେ ସବୁଦେଲେ ପରକରି,
ତୋ ନାମ ପର୍ଯ୍ୟନ୍ତ କି ମା ନେବୁ ସତେ ଅପସାରି ।୧।

ଜାଳିଲି ଯେ ପାପ ଶିଖା
ସେ ସବୁ ଗୋ ବିଷ ମଖା
ରୋପିଲି ଯେ ଲତା ତାର ଫୁଲେ ଗନ୍ଧ ନାହିଁ ଭରି
ସାଜିଲି ମୁଁ ଶେଯ ତଳେ, ଦେଖୁ ଏବେ କଣ୍ଟା ସାର ।୨।
କଷଣଶୀ ଅନୁଭବେ
ବୁଝି ବୁଝି ସବୁ ଭବେ
ସବୁରି ଦୁଆରୁ ତାଗ, ଫେରିଛି ମୁଁ ଥାଳ ଧରି
କେତେ ଦିନ ଆଉ କହ ଭସାଇବ ଭଙ୍ଗା ତରି ? ।୩।

———

( ୧୬୩ )

ଦିବସ ଯାମିନୀ ଭବାନୀ ଭବାନୀ ଡାକି ଗଲା ସତ ତ
ଗଉରୀ ଗୋ ! ତୋର ଚରଣ-କଞ୍ଜରେ ନ ରହିଁଲୁ ଫେର ତ ।୦।
ମହିଷ-ମର୍ଦ୍ଦିନୀ, ଶୈଳ-ବାସିନୀ
ନିଖିଳ-ଭବଜନ-ଦୁଃଖ-ନାଶିନୀ
ତାରିଣୀ ! ହରଚିତ୍ତ-ହାରିଣୀ,
ନାଗ-ନରେଶ୍ୱର-ବନ୍ଦିନୀ ମା କୃପା ସରିତ;
ଡାକି ଡାକି ତୋତେ ଶଙ୍କରୀ ଗୋ ସତେ
କାଳ ଗଲା ସରି ତ ।୧।
ସମର-ରଙ୍ଗିଣୀ ଶିବ-ସଙ୍ଗିନୀ
ଚଣ୍ଡ-ମୁଣ୍ଡ-ପ୍ରତାପ-ଭଙ୍ଗିନୀ
ଭକ୍ତ-ମାନସ-କଞ୍ଜ-ରଞ୍ଜିଣୀ
ପ୍ରଣତ-ଜନ ହିତ-କାରିଣୀ ମା ତୋରେ ଅନୁସରି ତ
ହେଲାଣି ଗୋ ତାଙ୍କ ସତେ ଶଶଧର କୁଳଚୂଡ଼ା ସରି ତ ।୨।

ଚଣ୍ଡିକେ ନରମୁଣ୍ଡ-ମାଳିନୀ !
କାଳିକେ ଜୟ ଗୌରୀ ଶୂଳିନୀ !
ଚଣ୍ଡିକେ-ଭବ-ଭୟ ନିବାରିଣୀ
ଶରଣ ଦିଅ ଜଗ-ପାଳିନୀ ମା, ଅନାଥ ଖେଦ ବାରି ତ ।
କବିଚନ୍ଦ୍ର ଭଜେ ସାହା ଏକା ତୋର ଶ୍ରୀ ଚରଣ ଧାରି ତ । ।୩।

———

( ୧୬୪ )

ଆଜି କେତେ ଆଖି ଲୁହ, ଅଜାଡ଼ିଲେ ସତ କହ
ଧୋଇ ଦେବ ପାଦଯୁଗ ତୋର,
କହ କହ ତୁ ଭବାନୀ ! କରୁଣା ତୋ ମାରୁ ନାହିଁ
ଜାଣେ ମୁହିଁ ଲୁହ ଢାଳିବାର···ଗୋ କୃପାମୟୀ !
ଜୀବନେ ମୁଁ ହସ ଶିଖି ନାହିଁ;
ଜନମେ ତ ଦୁଃଖ ଲହି ଦେଲୁ ଜଗତେ ପଠାଇ
ଡରିବି ମୁଁ ଆଉ କାହିଁପାଇଁ ? । ୧।
ଦୁଃଖ ଯାଉ ଅନ୍ତ ନାହିଁ ଜନନୀ ତାର ବୋଲାଇ
ଡରେ ବାଧୁ ନାହିଁ ଯେବେ ତାରା!
ଏ ସାରା ଜଗତ-ଜନ ବୋଲିବାର ଅକାରଣ
ଭବାନୀ ତୋ ନାମ ଦୁଃଖ ହରା···ଗୋ କୃପାମୟୀ !
ପାଷାଣ ତନୟା ବୋଲି ଭୁଲି;
କବିଚନ୍ଦ୍ର କହେ ଏତେ ପାଷାଣୀ ହେଲୁକି ସତେ
ଡାକ ମୋର କାନେ ନ ବାଜଇ ।

—o—

( ୧୭୫ )

ଗିରି-କୁମାରୀ ! ରୁଷନା ଶ୍ୟାମା, ଶୁଣ ଗୌରୀ !
ଆନ ନ ଦେଖ ଏ ଧାର
ପାଷାଣ ତନୁଜା ପରା (ତୁ)
କାହୁଁ ତା ପିବୁ ପାସୋର ? ।୦।
ଭୁବନ ରଚେ୍ଛ ତୁ ଯେ ତନୟ-ତାରଣୀ
ମଙ୍ଗଳ-ମୟୀ ମାଆ, ଭବ ଶିବଦାମୀ
ପାଷାଣୀ ନୋହିଲେ ତୁନ ରହେ ମାଆ
ଯାଏ ନ ତନୟ ତା ଦୁଆରୁ ଫେରି ? ।୧।
ରୁଷିଲେ ରୁଷ ମାଆ, ସତ ମୁଁ ଦେଲି କହି
ବଳନି ପରା ସୀମା, ସବୁ ତ ସହି ସହି,
ତୋ ଗୁଣ ଜାଣି ତ ସତେ ଗୋ ଭବାନୀ !
ଗଙ୍ଗା ଶିରେ ଧରି ହେଲା ଭିଖାରୀ ।୨।
ଡରି କେ ଡାକେ ସିନା ଦୟାମୟୀ ତୁ ବୋଲି
ଆଉ ନ ଡର ମୋର, ସବୁ ତ ଗଲା ସରି
ପାଷାଣ ଜନମ ଭୁଲିବୁ କି କରି
କବଣଶୀ ବନ୍ଦେ ମା ପଦେ ନ ହାରି ।୩।

— — —

( ୧୭୬ )

ନନ୍ଦକୁଳ-ଚନ୍ଦ୍ର, ଜୟ ଶିଖୀ-ପୁଚ୍ଛ ଧାରୀ
ଜୟ ଯଶୋଦା-ଜୀବନ-ଧନ, କୁଞ୍ଜବନ-ଚାରୀ ।୦।

ଆରତି ଘେନ, ମିନତି ଘେନ
ଚରଣ ତଳେ ପ୍ରଣତି ଘେନ
ଘନ-ବରନ ମନ-ମୋହନ
ଗୋପୀ-ମନୋହାରୀ ।୧।
ଯମୁନା-ତଟ ବଂଶୀ-ବଟ—
ନିକଟ ବନ ନଟନ-ଶଠ
ନିପଟ ଧୂର୍ତ୍ତ, ନଟ-ମୁକୁଟ
କପଟ କଂସାରି ।୨।
କାଳୀ-ବିଷ-ଦଳନ, ବଳି—
ଦାନ-ଛଳୀ, ସୁର-ମଣ୍ଡଳି
ଲଳିତ କଳକାବଳି—
ସୁମାଳି, ଦଇତାରି ।୩।
ମାଧବ ହେ, ଚରଣ ତବ
ଅଗମ, ମୁନି ଜନ-ବିଭବ
ଭବ-ଜଳଧି ନାବ ହେବ
କେଶବ ମୁରାରି ।୪।

— — —

( ୧୬୭ )

କଣ୍ଠ ଘେର ତୁଳସୀ-ଦଳ ପରଶେ
ହେବ ଦରଶନ କାହିଁ,
ଶିର ଭର ହରି-ଚନ୍ଦନ ବାସେ,
ହେବ ଦରଶନ କାହିଁ ? ।୧।

ରାମ ନାମ ଜନ୍ତ ନାସି ବନ ଗାଇ
ଗଙ୍ଗା ଜଳ ଦଳ ପାଇ
ପାଟ ପୀତାମ୍ବର ତିଳକ ପନ୍ଦରଣେ
ତାଳ ମୃଦଙ୍ଗ ବଜାଇ—
ହରି ଦରଶନ କାହିଁ ? ।୧।

ବାସ କରି ଗିରି କାନନ ଗହନେ
ଯାଗ ତ୍ୟାଗ ଅଜମାଇ
କ୍ଷୀର, ନୀର, ଫଳ ମୂଳ ଭୋଜନେ
ଜପ ତପ-ଝୁଲି ଝୁଲାଇ —
ହରି ଦରଶନ କାହିଁ ? ।୨।

ପ୍ରେମ-ଭକ୍ତିର ଅନ୍ତରେ ଅନ୍ତରେ
ଘଟେ ଘଟେ ସେ ଯେ ଥାଇ
ପ୍ରେମ ବନେ କବିଚନ୍ଦ୍ର କହେ
ମିଛ ମନ୍ଦିର ମେଢ଼ ସଜାଇ—
ହରି ଦରଶନ କାହିଁ ? ।୩।

( ୧୬୮ )

(ଆଜ) କେତେ ପରଖିବ ନିରଖ-ଜନରେ
ଲାଜ କି ନୋହିଲ ପାସୋର,
ପରଖି ପରଖି ମନ ମାନୁ ନାହିଁ
ସାଧ କି ଅଛି ଆତୁର ? ।୧।

ଢାଳିଲ ମଥାରେ ଯେତେକ ଜଞ୍ଜାଳ
ସବୁ ତ ସହିଲ ନ କରି କଟାଳ
ଆଖି ଛୁଇଁ ମୋତେ
ଚକା-ଡୋଳା ! ସତେ
କହ ତୁମେ ସତ କରି,
ମାରିବା ଜଣଟି ବଡ଼, କି ସହିବା ଜଣେ
ଯେଣ ବଡ଼ କରି ? ।୧।
ପ୍ରଭୁ ବୋଲି ସିନା କହିବ ନାହିଁ ମୁଁ
ଶ୍ରେଷ୍ଠ ମୁହେଁ ବଡ଼ କଥା,
ଯେବେ ଯାହା ତୁମେ ଦଣ୍ଡୁଛ, ତହିଁକି
ପତାଇ ନାହିଁ କି ମଥା ?
ତୁମେ ପଗ ଥରେ ଗିରି ଟେକିଥିଲ
ମୋ ପଗ ଧୂଳିକି କଷ୍ଟେ ତ ବସିଲ !
କାହାକୁ କା ତୁଲେ
ତୁଳିଲ ହେ ଭଲେ
କହିଲ ଥରେ ବାହୁର;
ମୁହଁ ଖୋଲି ଦେଲେ, ଦେବଟି ତୁମର
ମହତ ଢକଡ଼ା କରି,
ବଡ଼ ଲୋକ ବୋଲି, କେତେ ବା ସହିବ ?
ଅଛି ତ ସୀମା ସବୁର ।୨।

---

( ୧୬୯ )

ମନତ ମୋର ଯେଣ ଗିରିଧାରୀ,
ନଟବର କୁଞ୍ଜ-ବିହାରୀ ।୦।

ସୁନ୍ଦର ହେ, ଧର ଗିରିବର ମନ୍ଦର
ଯମୁନା-ତଟ ବନବିହାରୀ
ରାଧା ମନ-ମନ୍ଦିର ଅଧିନାୟକ
ମାନ ରଖ ମୁରଲୀଧାରୀ ॥୧॥
ନାଗର ହେ, ବ୍ରଜ-ବନିତା-ମନହର,
ପରମ ପୁରୁଷ ନରକାରି,
ନାରାୟଣ, ଭବ-ତାପ-ନିବାରଣ
କୋଟି-ଚନ୍ଦ୍ର-ଶିରିହାରୀ ॥୨॥
ଜନମ ଜନମ ସେବି ଗୁରୁ ଚରଣ ଧୂଳି
ଶିର-ଚନ୍ଦନ ସରି ଢାଳି
ଶ୍ୟାମ ନାମ ଗୁଣ ଗାଇ ଯାଉ ଦିନ
କହଶଶୀ ଚରମ ଗୁହାରି ॥୩॥

---

( ୧୭୦ )

ଜଗବନ୍ଧୁ ହେ, ବନ୍ଧୁ ଯଦୁ-ନନ୍ଦନ !
ପ୍ରଭୁପଣେ ବଡ଼ ପତାକା ଉଡ଼ୁଛି
ବୋଲାଉଛ ପରା ଜଗବନ୍ଦନ ? ॥୦॥
ରସେ ମଜାଇଲ ଗୋପ-ଗୁଆଳୀକି
ଦଳିଥିଲ ପରା କାଳୀ ବଳକି
ହେ, କରି ଭେଳକି,
ମିଠା ଚାଖି ସାରି ସିଠା ଫିଙ୍ଗିଦେଲ
ରାଧା ମଲା ଝୁରି ବଂଶୀ-ବଦନ ॥୧॥

ଦୁଃଖ ସହି ସାରା ଜନମ ବିତିଲା,
ସୁଖ କୋଳକାର ହେଲା ସପନ
ହେ, ଧନ୍ୟ ଆପଣ,
ଆଜ କି ରଖିଚ ସାଇତି ମୋ ପାଇଁ
ଦେଖିବା ହରି ହେ ଚନ୍ଦ୍ରମା-ଠାଣ ।।୨।।

ଟେକା ଟେକି କରି ଡାକ ଯେ ମାଇଲା
ଜନ ଗତି ପାଦେ ମଥା କୁଟିଲା
ସେ ଭବୁ ତରିଲା,
କେତୋଟି ତାରିଛ ମୋ ପରି ଅଧମ
ଜନେ ଯେ ନ ଡାକେ ମଧୁସୂଦନ ? ।।୩।।

ବଡ଼ପଣେ ଯେତେ ଜଞ୍ଜାଳ ଟାଳିଲ
ମଥା ପାତି ପ୍ରଭୁ ସବୁ ସହିଲ
ମୁଁ ଅଳି ନ କଲି,
ନନ୍ଦୁ ନାହିଁ ! ବଳ କସ୍ତୁର ଆହୁରି
କାହିଁ ପରବତ କାହିଁ ପାଷାଣ ।।୪।।

---

( ୧୬୧ )

ମନ୍ଦର-ଗିରିଧର ବ୍ରଜ-ସୁନ୍ଦର ହେ
ବାସ ମାନ-କନ୍ଦର ହେ,
ନନ୍ଦ-ନନ୍ଦନ ଆନନ୍ଦ-କନ୍ଦର ହେ ।୦।

ଡର ମର ସିନା ମୁଁ ସାଆନ୍ତ ବୋଲୁଛି
ମନ କହୁନାହିଁ ସାଆନ୍ତ ମୋର,
ବଡ଼ ପଣେ ବଡ଼ ପତାକା ବାନ୍ଧ ତ
ମୋ ଲାଗି ଜଳଲ ସିଂହ ଦୁଆର,
ଜଡ଼ା ପଥର, ମଲ ଏଥର
ବୁଡ଼ିଯିବ ପ୍ରଭୁପଣ ଗୁରର
(ପଦ) ବଡ଼ ବୋଲି କେ କହିବ ଖାତର ହେ ? ।୧।
ଅଳ ଅର୍ଦ୍ଧକୁ ଡରିଗଲେ ସ୍ଥିତି
ପ୍ରଭୁ ବୋଲାଇବ କେଉଁ ଗୁଣର ?
ବୁଢ଼ ରହ୍ମ ନଜେ ଛପନ ଭୋଗରେ
ସେବକ ଜନରେ କରିଲ ପର ହେ !
ଜଡ଼ା ପଥର, ମଲ ଏଥର
ଛଡ଼ାଇ ନେଉଛ ବଡ଼ା ପତର
(ପଦ) ଫକାଶୀ ଉଡ଼ାଇ ରଖ ଏଥର ହେ ।୨।

———

( ୧୬୨ )

ନାଚ ରେ, ନାଚ ରେ, ନାଚ ରେ
ନବ ନଟବର ଗିରିଧର ଆଜ ।୦।
ଅଲକତ-ରଞ୍ଜିତ ଚରଣ-ସରୋଜେ
କନକ-ରତନ-ଖଚିତ ନୂପୁର ବାଜେ
ରୁମୁଝୁମୁ ରୁମୁଝୁମୁ ମଧୁର ନିନାଦେ
ଶିରପର ବନ ଫୁଲ ତାଜ ।୧।

କଟିତଟ ପୀତପଟ-ବନଫୁଲ ଶୋଭେ
କମ୍ବୁ-କଣ୍ଠ ତଟେ କଉସ୍ତୁଭ ମୋହେ
କଞ୍ଜ-ବଦନ ଛବି ନିରେଖି ସଦା ହେ,
କୋଟି ମଦନ ପାଏ ଲାଜ ।୨।

ବାଇ ବାଇ ଘନ ମୁରଲୀ ଫୁକାରେ
ମଞ୍ଜୁ କୁଞ୍ଜେ ମଧୁ-ଚନ୍ଦ୍ର ନିଶାରେ
ଛନଛନ ଧମ୍ମ ମନ, ପଲକେ ବଶୋରେ
ଗୁ ରୁ ଗୁ ରୁଜନ ତନୁ-ସାଜ ।୩।

———

( ୧୭୩ )

କାଳା-ବଦନ ଛବି ଦେଖିଁ ଆଉଛ ଜଣେ
କର ଯୋଡ଼ି ଜାନୁସ୍ଥରେ ଗୁହାରି ଭଣେ ।ଘ

କରମ ଯେବେ ଫଟା—ଜାହ୍ନିକ ସଟା ବଟା
କହି ଦେଲେ ସରଲା—ଆଉ ନ ଆନ୍ତା ହଟା
କଏ ମଥା କୁଟନ୍ତା ଖାଇନ୍ଦ ପଣେ ।୧।

କାଳ ଲାଗିବ ବୋଲି—ବଡ଼େ ଆଆନ୍ତ ଡର
ତୁଏଁ ତ ମୁଖେ କାଳ—ବୋଲଛ ବନମାଳୀ
(ଆଉ) କ ଡର ନନ୍ଦା କଲେ ବଜାରେ ପଣେ ।୨।

———

( ୧୭୪ )

ଭଜ, କୃଷ୍ଣ-ଚନ୍ଦ୍ର ହରେ
ଜପ, କୃଷ୍ଣ-ଚନ୍ଦ୍ର ହରେ ॥ ୦ ॥
ଶ୍ୟାମ ହେ—ମୂରତି ଲଳିତ କୋଟି କାମ ହେ
ଅଭିରାମ-ମୋହନ-ଠାମ ହେ,
ଶରଣ ରଖ ପ୍ରଭୁ ଲୁଣ୍ଠିତ ଜନରେ
ଚରଣ-କଞ୍ଜ ତଳେ ॥ ୧ ॥
ସ୍ନିଗ୍ଧ ଚନ୍ଦନ-ଗନ୍ଧ ଶୋଭନ
ତ-ଛବି ଭୁବନ-ମୋହନ
ବନ୍ଦନୀୟ ହେ, ନନ୍ଦ-ନନ୍ଦନ
ମୋହନ ବଂଶୀ କରେ ॥ ୨ ॥

—୦—

( ୧୭୫ )

କୋଟି-ଶଶୀ-ଝଳତ ମୁଖ କାନ୍ତି
ଝଳସେ ତବ ଦୂର ତମ-ଭ୍ରାନ୍ତି,
ଅମଳ ଚିର ହାସ ତଳେ,
ଚଞ୍ଚଳ ଛନ୍ଦ ଖେଳଇ
ନୟନ ତଳେ ମୁଗ୍ଧ ମଞ୍ଜୁ ଶାନ୍ତି ॥ ୦ ॥
ଅମଳ ତବ ଚରଣ-ରଜ ମାଖି
କମଳ-ବନେ ଝଳକ ଶତ-ଆଖି
ଭୃଙ୍ଗ ମନ ଗୁଞ୍ଜି ଘନ
ମତ୍ତ ମଧୁ ଲାଳସେ—
ଝଳସ ଲକ୍ଷି ଭରମେ ନଇଁମାଖି ॥ ୧ ॥

ମରମ ଫେଇ ଯାଉଛି,
ଅନ୍ତର୍ଯ୍ୟାମୀ ! ତବ ଆଗମେ
କୁଞ୍ଜ ଫୁଲ ଦଳ ତଳପ ପାନ୍ତ,
କେବେ ହେ ଦେବ !
ଚରଣ ତବ ପରଶି; ସତେ ହାରିବ
ଚିର-ଦୁଷିତ ମନ କଳୁଷ-କ୍ଲାନ୍ତ ॥ ୨ ॥



( ୧୭୭ )

ଜଗବନ୍ଧୁ ପଦ-ପଙ୍କଜେ
ସଦାନନ୍ଦେ ମୂଢ଼ ମତି ଧ୍ୟାନ ସରଜେ ॥୦॥

କୁଞ୍ଜବନ-ଚନ୍ଦ୍ର ମଧୁ-ରସ ଋତ କରଜେ,
ଘନ, ଶୁଭ କାମ-ଛବି ଛନ୍ଦ ମୁଖ ସରଜେ

(ପଦ୍)

ମନ୍ଦର-ଧର ସୁନ୍ଦର, ରଞ୍ଜିତ ଶୀଳ-କନ୍ଦର
ମୁନିଜନ-ମନ-ମୋହନ, ଯୁଗ ଯୁଗ ଜଗ-ପାବନ
ହେ ସୁର-ନର-ପାଳନ
ଦୁଷ୍ଟ-ଦନୁଜ-ନାଶନ
ମାରଣ-କାରଣ-ତାରଣ, ଜଗନ୍ନାଥ ନାରାୟଣ
ନତ ଜଗଜନ୍ ଭଜେ ପଦାମ୍ବୁଜେ ।୧।



( ୧୭୭ )

ଚରଣ ତଳେ ତବ ଶରଣ ମାଗେ
ବରଜ-ବନ ବନ-ଚାରୀ
କେକୀ ପୁଚ୍ଛଧର, ଶ୍ୟାମ ସୁନ୍ଦର
ଗୋପିକା ମନୋହାରୀ ।୦।
ଫୁଲ୍ଲ ଶତଦଳ, ବଦନ ନିରମଳ
କୋଟି ଶଶୀ-ଶୋଭା ହାରୀ ହେ,
ନବୀନ ନୀରଦ କାନ୍ତି ଝଲମଲ
ମୋହନ ମୁରଲୀ-ଧାରୀ ।୧।
ଭକ୍ତ-ପ୍ରେମ ପିପାସୀ ନଟବର
ପ୍ରଣତ-ଜନ-ହିତକାରୀ ହେ,
ଅନ୍ତେ ଚରଣରେ ଠାବ ଦିଅ ହରି,
ମିନତି ସେବକ ଗିରିଧାରୀ ।୨।

---

( ୧୭୮ )

ଭଜ ଶ୍ୟାମ, ମଧୁର ଠାମ, ନବୀନ କାମ—ମୋହନକୁ
ଶୁଭନାମ, ସୁରଭି ଧାମ, ମୁରଲୀ-ବାମ-ଶୋଭନକୁ ॥୦॥
କଞ୍ଜ ପଦ୍ମରେ ନୂପୁର
ଝୁ-ନୂପୁର ମରମେ ବାଜେ,
ବିମ୍ବ ଅଧର, ଚୁମ୍ବି ମଧୁର, କୁନ୍ଦ ଦଶନକୁ ॥
ଘନ ଘନ ମୁରଲୀ ବାଇ
ବୃନ୍ଦ ବୃନ୍ଦ ନାରୀ ଝୁରାଇ
କୁଞ୍ଜ ଭବନ, ପ୍ରେମ ମଗନ ପୀତ ବସନକୁ ॥

---

( ୧୭୯ )

ମନ-ମୋହନ, ବ୍ରଜ ଚନ୍ଦନ
ଜଗ ବନ୍ଦନ—ଗିରି-ଧାରୀ,
ଅମଳ ଶତଦଳ—ନନ୍ଦ ପଦ ତଳ
କୁଞ୍ଜ-ବନ-ବିହାରୀ ।୦।
କି ସତେ ନାହିଁ ଆଜ, ରତନ ଆକର
ମଦନ-ମୋହିନୀ ଛବି ଝୁରେ ଯାର
ଭବ-ବିଭବ-ତୁଳ ଲକ୍ଷ୍ମୀ ଘର ସାର
କି ଦେବି ବୋଲି ମନେ ଭାଳି ।୧।
ହରିଛୁ ବଳେ ତବ ମନ ହେ ମୋହନ !
କଟାକ୍ଷ ଶର ମାରି କଶୋଣ୍ଣ-ନୟନ
ଦେଇଛୁ ଭେଟି ଆଜ ମନ ମୋର ଘେନ
ଧୋଇ ମୁଁ ଆଖି ନୀର ଢାଳି ।୨।

---

( ୧୮୦ )

କାହିଁ ସଖି ! କାହିଁ ସଖି !
ବଂଶୀ-ବଦନ ଘନଶ୍ୟାମ,
ବୃନ୍ଦାବନ ତେଜି, ମଧୁପୁରେ ଷ୍କେଜ
କୁଞ୍ଜ ଭବନ ନବଠାମ ।୦।
ଦରଣ ଛନେ ସ୍ୱଧା ନଷ୍ଟି ଝନ ଝୁରେ
ନସ୍ଥୁର ବନ୍ଧୁ ଆ ଗୁଣ-ଧାମ,
ଦୁଃଖ ଝଏ ଅଭିରାମ—ସୁନ୍ଦର ମୁଖ ଜିତ-କାମ

ନୟନ ସଲିଲେ ଯମୁନା ବହାଏ
(ଗଇ) କଜ୍ଜଳ ଯେନା ହେଲା ବାମ,
ତା ବଦନ ଅଭିରାମ, ଦରଶନ ହଜେ ଉଜେ ଝାମ ।୨।

———

( ୧୮୧ )

କରୁଣା ଦୁଆରେ ଭିଖାରୀ ଆସିଛି
କଣ୍ଠେ ବେଦନା-ଗୀତ
ନୀର ଧାର ଝରେ, ତୁମରି ଚରଣେ
ଯୋଡ଼ିଛି ଆକୁଳେ ହସ୍ତ ।୦।
ସବୁ ଆଶା ସୁଖ, ମାୟା ମୋହ ମୋର
ଦୂରେ ରହିଲାଣି, ଶୂନ୍ୟ ଏବେ ଘର
ବିମୁଖ ନ କର ଦୀନଜନେ ଆଜ—
ନାହିଁ କେହି ଦୁଃଖ ସାଥୀ ।୧।
ସୁଖ ରବି ନାହିଁ ଦେବ ସେ ଆଲୋକ
ନବ କି ସପନ ନ ଜାଣେ ପଲକ,
ଦୁର୍ଦ୍ଦିନେ ଆଜ କାହିଁ କେ ଭରସା—
ତୁମେ ଏକା ପ୍ରାଣ-ପତି ।୨।

———

( ୧୮୨ )

ଅନାଥେ ଅନାଇଁ ଥରେ ଆହେ ଅନାଥ-ଶରଣ
କି କହିବି ମନ-କଥା ଅନ୍ତର୍ଯ୍ୟାମୀ କି ନ ଜାଣ ? ।୦।

ତବ ବିନେ କଏ ମୋର
ଘୁଞ୍ଚାଇବ ଖେଦ-ସ୍ୱର,
ଅହରହ ଜଞ୍ଜାଳରେ ଯାଉ ଜୀବନ ବହନ ।୧।
ଆଶାରେ ଆଶାରେ ମରି
ଗଲଣି ହେ ନାଥ ସରି,
ଏ ଆଶା ପୂରିବ ଯେବେ ମେଲିବ ତୁମେ ନୟନ ।୨।
ଚରଣ ଧୂଳିର ତଳେ
ଥରେ ହେଲେ ଠାବ ଦେଲେ
ମେଣ୍ଟିଯିବ ସବୁ ତୃଷା ଅଭାଜନ ଅକିଞ୍ଚନ ।୩।

---

( ୧୮୩ )

ଅନ୍ତରେ ମୋର ଅନ୍ତରଯାମୀ ଆଜ
ମରମ ଆସନେ ଆସ ହେ ନାଥ ବିରାଜ ॥୦॥
ଗୋଧୂଳି ଶୁଭ ଲଗନେ, ମଧୁର ବାସ ପବନେ
ଫୁଲ ସାଜେ ସାଜ ରଚିଛି ଦେବତା
ନ ଭଣ ଲୋକରେ ଲାଜ ।୧।
କଣ୍ଠରୁ ମୋତେ କାନେ କାନେ କହି
କି ବୋଇଲେ ତୁମେ ଶୁଣ,
ଶିଖାଇ ଦିଅ ଗୋ, ଗାଇଲେ କି ସ୍ୱରେ
ଫୁଟିବ ଭ୍ରମର ଗୁଣ;
କି ଭୂଜ ଧରିଲେ ଲେଖି ପାରିବ ମୁଁ
ତମରି ମୋହନ ଛବି,
କି ଭଳି ଭାବନା ଲେଖିବି, ହେବ ମୁଁ
ତମରି ଦରଶୀ କବି;

ନ ସୁରେ ବାନ୍ଧବ ବୀଣା
ହେବ ତବ ମନ କଣା
ତମ ଜମ ଛନ୍ଦ ଝୋଲାରେ ଯାଚବ
ନୂତନ ମୋହର ମାଳ ।୬।

---

( ୧୮୪ )

ସୁଖ ନୁହେ ତବ ଆଶିଷ ବିଧାତା,
ଦୁଃଖ ସିନା ତବ ଦାନ,
ରଜନୀ ବିନା କି ସାଜଇ ସରସ—
ଦିବସ ଶିଶୁ ତପନ ? ।୦।
ଗଗଣ ଜଣିରେ ଅନ୍ଧାର ଭିତରେ
ଜଳେ ଯେବେ କ୍ଷୀଣ ବତି,
କୋଟିଏ ପ୍ରଦୀପ ଶିଖାରେ ଝଳାଶେ
ପ୍ରେମିକ ଭୂମନ୍ତ ଜ୍ୟୋତି,
ସେ ଆନନ୍ଦ କାହିଁ ପାଇନ୍ତ ରଖିନ୍ତ
ଖୋଜି ତ ନପାଏ ସ୍ଥାନ ।୧।
ଦୁଲୁଣିନେ ଯେବେ କୋମଳ କରଟି
ପରଶଇ ଶିର ମୋର
ତୁଷାର ଶୀତଳ ସେ ଅବା ସତେ କି
ଶରଦ ଶଶୀର କର
ଖେଦ ଯାଏଁ ଭୁଲି, ପଇଶେ ଘୁମାଇଁ
ନଭେଖେ ସୁଖ ସପନ ।୧।

---

( ୧୮୫ )

ପତିତ ପାବନ ନାମ

କିଏ ବା କହିବ     ନଡାକିବ ଯେବେ
ମୋ ପରି ପତିତ ଜନ ? ॥୦॥
ଜାଣିତ ନଥିଲ     ମୋ ସରି ପତିତ
ଜନମ ଲଭିବ ଭବେ,
ଜାଣିଥିଲେ ସତେ     ପତିତ ପାବନ
ନାମ କି ଧରନ୍ତ କେବେ ?
ଅଳି କରୁନାହିଁ,     ପାଶେ ଯିବା ପାଇଁ
ତୁମ୍ଭେ ନ ଡାକିବ ଯେବେ,
ନାମରେ ତୁମରି କଳଙ୍କ ଲଗିବ—ହସିବ ସିନା ଭୁବନ ।୧।
ଲାଜ ଡର ଥିଲେ     ସେନ ଦୟାନିଧି,
ପତିତ ଜନର ପାଶ,
କେବେ ନେବ ଅବା କେତେ କାଳ ପରେ
ଏ ପରାଣେ ଦଅ ଆଶ,
ଅଣାଚ ପାସୋର,     ପତିତ ଆସିଛୁ
ଭକ୍ତ ତ ନାହିଁ ଗାଟବେଶ,
ପ୍ରଭବାନେ ମାର ଧାର ସାଇଛୁ ନରେଖ ଦୁଇ ନୟନ ।୨।

---

( ୧୮୬ )

ଲାଜ ରଖ ଗିରିଧାରି ହେ ।
ଘନ-ବରନ ବନଭୂଷ !
କଞ୍ଜଜିତ ଯୁଗଚରଣ ତଳେ ତବ
ଶରଣ ଦଅ ହେ ମୁରାରି ॥୦॥

ମୟୂର ମୁକୁଟ ଶିରପରେ ଝୁଲେ
ଉର ଶୋଭିତ ବନଫୁଲେ—
ପୀତ-ବସନ ନୀଳ-ତନୁବର ସାଜେ
ନବଘନେ ଦାମିନୀ ସେ ଯେ,
କଟି-ତଟେ ପୀତ-ପଟ୍ଟ ଝଲକ ବିରାଜେ
ମରେଁ ମରେଁ ଶିଖିକ ନିହାର ।୧।
ଗାଇ ଗାଇ ଗାନ ମୁରଲୀ ଫୁକାରେ
ବ୍ରଜ-ଭାମିନୀ ମନ ହାରେ—
ତ୍ରିଭଙ୍ଗ ବଙ୍କିମ ଠାମ ବିରାଜେ,
କିଙ୍କିଣି ଝଣି ଝଣି ବାଜେ
ରତି-ପତି ହେଉ ମନେ ଲାଜେ
ନୀପ-ଉପବନ ବନବିହାରୀ ।୨।

———

( ୧୮୭ )

ଜୟ ଜଗଦୀଶ ହରେ !
ପରମବ୍ରହ୍ମ ପରମେଶ୍ୱର ଈଶ୍ୱର
ଶୋକତାପ ହରତା ହେ ॥
ଗଗନ ପବନ ବନ-ଉଜ୍ଜ୍ୱଳ ଏ ତପନ
ସୁନ୍ଦର ଶଶଧର; ତାରା,—
ଜଗସାରା, ପ୍ରେମ ଗାନ ମଧୁଆରା—
କଂସ ନିସୂଦନ—ତ୍ରିଭୁବନ ବନ୍ଦନ
ତାପିତ ଜନ-ମନ—ବାଞ୍ଛିତ ଚନ୍ଦନ
ଆଦ୍ୟ ଅନ୍ତ ତବ, ନିତ୍ୟ ସନାତନ,
ଧ୍ୟାନ ଯୋଗ ପରପାରେ ॥



( ୧୮ )

ହେ ବିରାଟ ! ହେ ମହାନ !
ମହିମା ତବ ନିଖିଳ ବିଶ୍ୱ ଗାଏ,
ଚକିତ ଜନ ନୟନ ମନ
ଧ୍ୟାନ ରୂପ ନିତି ନିରେଖି ଗୃହେଁ ॥
ଅରୂପ ଛବି ତବ ସ୍ୱରୂପ ଜୀବ ତଳେ ଫୁଟେ
ନୀଳ ଆକାଶ, ରବି ଶଶୀ ପ୍ରକାଶ ଫୁଲ ଲୁଟେ
ଅମଳ ତବ ଚରଣ ତଳେ
ନଗ ସକଳ ଧ୍ୟାୟେ
ପ୍ରଣତ ଜୀବ ଶାନ୍ତି ସୁଧା ପାଏ ॥

———

( ୧୯ )

ଅରୂପ ସ୍ୱରୂପ ତୁମେ ବହୁ-ରୂପ-ଧାମ
ତୁମେ ରାଜ-ରାଜେଶ୍ୱର, ପଥର ଭିଖାରୀ ।୦।
ଆକାଶ ଅଙ୍ଗେ ଅନାଦି ଅନନ୍ତ
ଅଗଣ ପ୍ରକାଶେ ତୁମ୍ଭେ ଜଳନ୍ତ
ତପନ ତ ଦୋଷେ ତୁମେ ହେ ଜ୍ୱଳନ୍ତ
ଶଶୀ ହୃଦେ ସୁଶୀତଳ ଜନ ତାପ-ହାରୀ ।୧।
ଜଳଧି ତରଙ୍ଗେ ତୁମେ ଉଦ କଲ୍ଲୋଳ
ନଦୀ ପୁଣ୍ୟ ଧାରେ ତୃଷ୍ଣା ନିବାର;
ମରୀଚିକା ସଙ୍ଗେ ଖେଳ ଇନ୍ଦ୍ରଜାଲ
ଜଗ-ବିଭକାରୀ, ବର୍ଷନ୍ତ ବାରି ।୨।

କୁସୁମ ସୁହାସେ ହେ ଚିର ସୁନ୍ଦର !
ଶିଶିରେ ବିକାଶ ତୁମ ପ୍ରେମ ଧାର;
ନିଶୀଥିନୀ ବନ୍ଦେ ଶାନ୍ତି-ଆଧାର
ଜଗତ ରଟେ ତୁମେ ସ୍ୱପନ-ବିହାରୀ ।୩।
ପାପୀର ଜ୍ଞାନେ ତୁମେ ହେ ପ୍ରଚଣ୍ଡ
ଅନୁତାପୀ ଜାଣେ ତୁମେ ନ୍ୟାୟ-ଦଣ୍ଡ;
ଶିଶୁଲଗି ନିତ୍ୟ କଲ୍ୟାଣ-ଭାଣ୍ଡ
ଜନନୀର ବକ୍ଷେ ଅମୃତ ଡାଳ ।୪।

---

( ୧୯୦ )

ଯେନ ଚନ୍ଦନ ଫୁଲ ଗୋ
ରସିଆ ଗିରିଧାରୀ,
ପଖାଳ ଆଣିଛୁ ବନ୍ଧୁ ଡାଳ ଆଣି ଦ୍ୱାର ।୦।
ନାଗର ହେ ବନଚାରୀ
ଗୋପ ଗୋଇ ମନହାରୀ
ଶିରୀ ହେର ରତ୍ନ ମରେ ଝୁରି ।୧।
ସୁନ୍ଦର ହେ ଘନଶ୍ୟାମ
ଜାମ ଜଣା କମ ଠାମ
ଘର ଚେଳ ଧମା ହେଲ ଘାର ।୨।
ମୋହନ ହେ ବନସତ୍ତ
ଝୁହିଁ ଝୁହିଁ ପଥ ନନ୍ତ
ଆଖି ପାଣି ଯାଏ ମରୁ ମରୁ ।୩।

---

( ୧୯୧ )

ନୀଳ-ମାଧବ,
ତୁମେ ସବୁ ଜଗତ-ନାଥ !
ମୋ କଥା ଶୁଣି ଶ୍ରୀମୁଖ ଲାଜେ ନ ପୋତ ॥୦॥
ଜଗତେ କହନ୍ତି ତୁମେ ଦୟା-ସାଗର
ଅନୁଭବେ ବାରି ନାହିଁ ଲବେ ମାତର,
ଫଳରୁ ଉପଗତ
ଭଳି ଯେ ଲଏ ଚିତ୍ତ
ଜାତି ତ ନେଇଛ ତା ବାଡ଼ିଲି ଘାତ ।୧।
ମନେ ପଡ଼ୁ ଛି କି ନାହିଁ ଗୋପରେ ଥରେ
ରାଧାକୁ ବସାଇଥିଲ ବ୍ରଜ-ପଥରେ
ତୁମ ପ୍ରେମରେ ଭୂଲି
ମତ୍ତ ଚାଳନ୍ତି ବୋଲି,
ଦ୍ୱାର ମଲ୍ଲ ସେ ଦିନ ଲୁହେ କି ସତ ।୨।
ଜାହାର ନ କରନ୍ତ ହେ ଲଜା ସେବାରେ
ଲଏ ଅବା କଣିଥିବ ଦେବା ନେବାରେ
ଲବେ ଯେ ଡାକ ନାହିଁ
ଚାହନ୍ତ ତାକୁ କାହିଁ
କହିଲ ଉଷି ନିଜ ଗ୍ରନ୍ଥରେ ହାତ ।୩।

---

( ୧୯୨ )

ମାଧବ ମନ-ମୋହନ
ଛଇଳ ନାଗର କହ୍ନା ଚନ୍ଦ୍ରବଦନ ।୦।

ସଜଳ ଜଳଦରୁଚି,
ଶ୍ୟାମ ତ୍ରିଭଙ୍ଗି ମୂରତି
ନଟବର ପୀତପଟ, ନନ୍ଦ ନନ୍ଦନ ।୧।
ଗୋପିକା ଚିତ୍ତ—ଭୃଙ୍ଗ
ନନ୍ଦିତ କୋଟି ଅନଙ୍ଗ
ଶ୍ରୀମନ୍ତ ମନ-ମୋହନ; ଜୀବ-ଜୀବନ ।୨।
ଅଗତି ଗତି କାରଣ
ଅନାଦି ଦେବ ନାରାୟଣ
ଅନ୍ତିମେ ଚରଣେ ଦୀନ ମାଗେ ଶରଣ ।୩।

---

( ୧୯୩ )

କୋଟି ଚନ୍ଦ୍ର ଖେଳେ
ବଦନ କମଳେ
କୋଟି କାମ ଶିଖି ହାରେ
ବିକଚ ଶତଦଳ
ବିମଳ ଝଲମଲ
ରତି ଉମା ଲାଜେ ନିହାରେ ।୦।
ସରସ ନଳିନ ଦଳ — ନୟନେ ଛଳଛଳ
କୁନ୍ତଳ କୁସୁମ ଶୋଭିରେ,
ଅଳିକୁଳ ଆକୁଳ — ଆନନ୍ଦ ପରିମଳ
ଚୁମ୍ବନ ଲୋଭ ବିଭୋରେ,
ଚନ୍ଦନ ବିନ୍ଦୁ ବିରାଜିତ ଭାଲେ କି
ଶଶଧର ଗେହିଣୀ ଭୁଲେ ? ।୧।

ଶ୍ୟାମଳ ଜଳଧର — ନନ୍ଦନ-ବଂଶୀ-ଧର
ତ୍ରିଭଙ୍ଗ ଭଙ୍ଗି ଭଙ୍ଗୀ ରେ,
ସାଇ-ମଗନ ମନ — ଘନ ଘନ କମ୍ପନ
ତ୍ରିଭୁବନ ଜୀବନ ଲୋକ ରେ,
ବୃନ୍ଦାବନ ବନ-ମଣ୍ଡନ ମୋହନ
ମୁରଲୀ ନିନାଦ ମନ ସାରେ ।୨।

———

( ୧୩୪ )

ଶଙ୍କର !
ଖଲଚନ୍ଦ୍ର ଗିରିବାସୀ ।
ଶିବ ନାମ ଭବ-ଦୁଃଖ ବିନାଶନ,
ଗିରିଜା ମୋଦ-ବିକାଶୀ ॥୦॥

ଜଟା ମୁକୁଟ ପର ସୁରଧୁନୀ ସାଜେ
କୁଟ-ନାଗର ବିଷ-ପାୟୀ
ଯୋଗୀ ଜନ-ମନ-ମନ୍ଦିର ଶୋଭନ
କୋଟି ତପନ ପରକାଶୀ ॥୧॥

ତ୍ୟାଗ-ସାଜ ନଟ-ତାଣ୍ଡବ ପ୍ରେମିକ
ଡମ୍ବରୁ ସଘନ ବଜାଇ
ଭୂତ ସଙ୍ଗେ କର ରଙ୍ଗ ଦିଗମ୍ବର
କାନ୍ତ କାମ-ଗର ନାଶୀ ॥୨॥

———

( ୧୯୫ )

ନବ ଜଳଧର-ବରନ ସୁନ୍ଦର,
ଶ୍ୟାମ ବନ-ବିହାରୀ
ମନ୍ଦ ମଧୁର ମୁରଲୀ ସ୍ୱନ
ଗୋପିନୀ ମନୋହାରୀ ॥୦॥
ସତତ ଭକତ ସଙ୍କଟ-ହର
ବ୍ରଜ ଚନ୍ଦନ ହେ ଗିରିଧର,
ପୀତାମ୍ବର ଧାରୀ ମନ ଚୋର
କୁଞ୍ଜ ଭବନ-ଚାରୀ ।୧।
କାମିନୀ ଜନ-ମନ ମୋହନ
ଦାମିନୀଜିତ ଛଟକ ନୟନ,
ପଦ ପଙ୍କଜେ କମଳାମୀ ଲଭେ
ମରଇ ନତି ଜ ହାରି ।୨।

---

( ୧୯୬ )

ନାରାୟଣ, ନାରାୟଣ
ନାରାୟଣ ଭଜ ମନ
ନାରାୟଣ ଭଜ ।
କଞ୍ଜଚରଣ ଗରୁଡ଼ାସନ
ଅଙ୍ଗେ ଝଲକେ ପୀତ ବସନ
ଚନ୍ଦ୍ର ବିଜିତ ସୁରୁଚିବଦନ,
ନାମ ସ୍ମରଣ ମୋକ୍ଷ ଧାମ ।୧।

ଶଙ୍ଖ ଚକ୍ର ତେଜି
ହେବ ! ସାରଥୀ ରୂପ ସାଜି
ଶ୍ରୀକରେ ଶୋଭେ ରଜ୍ଜୁ ଦଣ୍ଡ
ମାସ୍ତୁଧର ଭକତ ଜୀବନ ।୨।

ଗୋବର୍ଦ୍ଧନ ଧାରୀ
ଚରଣ ତଳେ ଜୁହାରି
ମାଗେ ଶରଣ ରଖ ମୁରାରି !
ନ ଧର-ଅଧର ମୁରଲୀ-ବଦନ ।୩।

— — —

( ୧୯୭ )

ଚକା ନୟନଙ୍କୁ ଶୁଣି ଗରବ ଜଣେ
ଅନ୍ଧା ହୋଇ ଡକା ମାରି ଗୁହାରି ଭଣେ ।୦।
ଜନବନ୍ଧୁ ନାମ ହରି ବହିଛ ମିଛେ
ମୋ ପରି ଗରବ ପରା ଧାଇଁଛି ପଛେ
ମୋତେ ଯେବେ ହେ, ହରି
ଦେବଟି ପାରିକରି
ଚରଣ ତଳେ ଦେବ !
ଏ ପାପୀ ଠାବ ଦେବୁ
ଜଗବନ୍ଧୁ ହେ ! ଜଗବନ୍ଧୁ ହେ !
ଗଣିବ କେବେ ମୁଁ ପିନା ଖାଉଁଦ-ପଣେ ।୧।
ମୋପରି ପତିତ ଜଣେ ଅଛି ଜଗତେ
ଜାଣି ନଥିଲ ବୋଲି ମୁଁ ମଣୁଛି ଚିତ୍ତେ

ଲେଖିଛ ଯାହା ଥରେ
ଏ ମୋର ଫଟା ଘରେ
ଆଉ କାଟିବା ପାଇଁ
ଶକତ ଯେବେ ନାହିଁ
ଜଗବନ୍ଧୁ ହେ ! ଜଗବନ୍ଧୁ ହେ !
ଚକ୍ରଧର ବୋଲ ମିଛେ ଜଗତ ଭଣେ । ୨।

---

( ୧୯୮ )

ନବୀନ-ନୀଳ-ଘନ, ନୀଳ ମାଧବ ଛୁଇ ହେ,
ଲୁଚାଇବ ଭବ ଛବକ ଗୁହ୍ନି ।୦।
ନୀଳ କନ୍ଦରେ ଛନ୍ଦପୁ ମଣିମା
ପତିତ-ପାବନ ବାନା ଉଡ଼ାଇ,
ପତିତ ଜନଙ୍କ ଗତି ତ ସତତ
ମହତ ଭଖ ତ ମୋର ଗୋସାଇଁ
ମୁଁ ଚରଣ ଛୁଇଁ
ସତ ଭଣଇଁ
ମୋ ସକ୍ଷ ପତିତ ଜଗତେ ନାହିଁ
(କହ) ତାରବ କି ଥିବ ମୁଖ ଲୁଚାଇ ।୧।
ଭ୍ରମରେ ହେଲେ ମୁଁ ନାମ ଜପି ନାହିଁ
ଆଣ୍ଠୁ ଶୁଣ ମୋର ଜଗତ ସାଇଁ !
ଲୋକେ କହୁଛନ୍ତି ପତିତ-ପାବନ
ପରଖି ଦେଖିତ ସତ କି ନାହିଁ

ମୁଁ ଉତ୍ତର ନାହିଁ
ଦେଖିବ ଯାଇଁ
ପାପୀ ଘଣେ ଅଛୁ ବାନା ଉଡ଼ାଇ
ରଖିଅଛ କାହିଁ ଠାବ ମୋ ପାଇଁ ।୨।

---

( ୧୯୯ )

ନାରାୟଣ, ରକ୍ଷ ହେ ଶରଣ
କଞ୍ଜଦଳ ବିଳାସୀ
ମୋ ଲାଗି ବଧୀର ହେଲ କି ଏଥର
ବଇକୁଣ୍ଠ ପୁର ବାସୀ ।୦।
ଝରେ ପଦ ପଦ୍ମୁଁ କରୁଣା ସରିତ
ମୋ ଲାଗି ହେଲ କି ଶୁଖିଲ ସରିତ
ଶକତ ନାହିଁ କି ମୁକତ ଦେବାକୁ
ଅପରାଧ ମୋର ନାଶି ।୧।
ଯାତନାର ସତେ ନାହିଁ କି ହେ ଅନ୍ତ
ତୁମ ମାୟା ଅଗୋଚର ତ ଅନନ୍ତ !
ମାର ଅବା ତାର ସଦା ମନ ମୋର,
ଯୁଗଳ ପଦ ପିଆସୀ ।୨।

---

( ୨୦୦ )

ସପନ ଛଳନା ସବୁ କୁହୁକର ଯାଦୁକର
ଚେତନା କାହିଁକି ଦେଲୁ ଚେତାଇ କହ ଶଙ୍କର ।୦।

ଲୁବ୍ଧକର ମାୟା-ଜର ପରଶିଲେ ମନ ମୋର
ଏ ଗରବେ ମାଆ ନାମ ଧରନ୍ତୁ କହ ଗଞ୍ଜଣା
ଦୁଃଖ ଯଦ କର୍ମଫଳ—ଦୋଷ ଯେବେ କପାଳର
ସୁଖ ଯାହା ଆସେ କେବେ, ସେ କି ମା' ତୋ ଦାନାନୁଗ୍ରହ ?।୨।
ପାଷାଣୀ ପାଷାଣ ଜେମା—ହୃଦୟ ନାହିଁ ତୋ ଜମା
ମାଆ ସ୍ତୁତି ନାହିଁ ତୋର—ଜାଣିଁ ତୋ ନୟନେ ଧାର ? ।୩।
କିବେ ସ୍ୱାର୍ଥ-ସାଧକେ—ତୋତେ ଯା' କହନ୍ତି ଲୋକେ
କହଣଣୀ କହେ ଭୁମା, ମିଛେ ସିନା ଭରି ମରି ।୪।

———

( ୨୦୧ )

ନବ ସୁନ୍ଦର ଚନ୍ଦନ ଗନ୍ଧ ଭରା
ତବ ଅଞ୍ଜନ ଗଞ୍ଜନ ଅଙ୍ଗ ପରା ?
କାନନ କାମିନୀ କୁଞ୍ଜ ତଳେ—
ରାଣ୍ଡି ବନୋଦ୍ଧମା ମାନଭରା
କଞ୍ଜ ଚରଣେ ତବ ନୂପୁର ଭରି
କେ ଶିଖାଏ ମଧୁର ବୋଲି
ବନ୍ଧୁ ! ନିତି ମୋର ସପନେ ଗୋ,
ଆସ ଥରେ ଥରେ ସନ୍ଧେ ମନ ଲୋଭ ।୧।
ଚେତ ବୃନ୍ଦେଁ କେବୁ ନାହିଁ ନାହିଁ
ପାଦେ କଣିଥିମା ରୁହିଁ ରୁହିଁ
କୋଇଲି କଣ୍ଠେ ସେ ସୁର ଫୁଟେ
ମୁଁ ଯେ ଝୁରି ମରେ ଏକ ସଙ୍ଗ ସାଗ ।୨।

———

( ୨୦୨ )

ଭରସା କାହିଁକି କଲି ତୋତେ
ମୋ ଭାଲେ ଯଦି ଗୋ ଲେଖା ଦୁନିଆଁ ଜଞ୍ଜାଳ ଯେତେ ।୦।
ମୋ ପରି କୁପୁତ୍ର କେତେ
ନାହାନ୍ତି କି ଏ ଜଗତେ
ଘୋଡ଼ାଇ ନ ରଖେ କି ଗୋ,
ଜନନୀ କହ ପଣତେ ।୧।
ସହିବାକୁ ଅପବାଦ
ମନେ ଯେବେ ଏତେ ସାଧ
ରଖିବୁ କାହିଁକି ଶ୍ୟାମା
କୁମାତା କହିଲେ ସତେ ।୨।
ଯେବେ ମୋ କରମ ହୀନ
ନ ପାରିବୁ କରି ଆନ
ଶକ୍ତିମୟୀ ନାମେ ଶିବା
କଳଙ୍କି ହେବୁ ଜଗତେ ।୩।
ଦୟା ଯେବେ ଗଲୁ ଭୁଲି
ପାଷାଣ ତନୟା ବୋଲି
ଜଗବନ୍ଧୁ କହେ ମା' ଗୋ,
ଦଳିଦେ ଚରଣ ପ୍ରାନ୍ତେ ।୪।

---

( ୨୦୩ )

ରଖିଛୁ କି ମାଆ ଶଙ୍କରୀ
ରଖାଇଲୁ କେ କି କରି ? ।୦।

ଫିଟିଚ୍ଛି ପ୍ରଲମ୍ବ କେଶ, ଅଯତନ ବେଶ ବାସ
ଜବା ତେଜ ଆଜ ଏ କି, ଗଳେ ତୋର ମୁଣ୍ଡମାଳ ?
ବଦନେ କାଳିମା ଘୁଛି, କାହିଁ ସେ ସରସ ନାହିଁ
ଛନ୍ଦି ତ ନତୁଏ ଆଜ, ଭ୍ରୁ କି ମା ଗଞ୍ଜସ ବୋଲ ।୨।
ଜର ଲାଗେ ତେଜ ଚୋଟେ, ବସୁଧା ତେଜ ସତେ
ଏ କି ମା ପ୍ରଳୟ ଖେଳ, ମା ତୁ ଯୋ ଜଗନ୍ମୟୀ ।୩।
ଖେଳା ହର ଗଙ୍ଗା ଭୁଲେ, ମାତ କି ଏ ଦୁଃଖ ଦେଲେ
ଅନା ମା ଚରଣ ତଳେ, ଆଣିଛି ମୁଁ ଶିବେ ଧରି ।୪।

---

( ୨୦୪ )

ଶ୍ୟାମ-ସୁନ୍ଦର ଗିରିଧାରୀ
ଯମୁନା-ତଟ ବନଚାରୀ ।୦।
ଶିରେ ଶିଖିପୁଚ୍ଛ
ପୀତ ବସନ ସ୍ୱଚ୍ଛ
ଦୂରୁ ମନେ ବରଜ-କିଶୋରୀ ।୧।
ସଖୀ ଧୃତ-ହସ୍ତ
କୁଞ୍ଜ-ବିହାରୀ
ନିତ ଘନ ମୁରଲୀ ଫୁଙ୍କାର ।୨।
ନବଘନ ଶ୍ୟାମ
ବଙ୍କିମ ଠାମ
ଶିରୀ ଦେଇ ମନେ ବ୍ରଜନାରୀ ।୩।
ଅଲକ୍ତ-ରଞ୍ଜିତ
ନୂପୁର ଶୋଭିତ
ଚରଣ ଶରଣ ଦେ ମୁରାରି ।୪।

---

( ୧୦୫ )

ମନମୋହନ ହେ ମନଚୋର ।୦।

ଭୂପାଳ ରାଗ          ଖେମ୍ଟା ତାଳରେ ଗୀତ

(ନଷ୍ଟ) ଘର ତିଆଗି, ଙ୍କରେ ମୁଁ ଯେ ଅନୁରାଗୀ
ବଂଶୀ ଶୁଣି ହୁଏ ପିଆ ଭୋର,
ଆଶାରେ ଆଶାରେ କେତେ
ବାଲିବନ୍ଧ ବଏଁ ସତେ
ଭସାଇ ଦିଏ ମୋ ଆଖି ଲୋର ।୧।

ଆସିବ, ଆସୁଁଚ, କହେ—କୋଇଲି ଡାକୁଆ ଗୋ,
ସପନ ମୋ ଆଙ୍କେ ଛବି ନୂଆ
ବାଉଳା ପବନ ଧାଇଁ, ଆଗମନ ପଥ ଗୋ,
ଝାଡ଼ିଦିଏ ଆଗୁଆ ଆଗୁଆ;
ଅନାଏଁ ଗୋ ବଣ-ମଲ୍ଲୀ
ଅଭିମାନେ ଫୁଲି ଫୁଲି
ଅଧା ରହେ କଜ୍ଜଳର ଗାର
ପଥ ଚାହିଁ ଆବେଶ ବିଭୋର,
କେତେ ଯାଏ ଆଉ ସତେ ଲୁଚିବ ନାହିଁ ଗୋ,
ଦିଅ ମୋତେ ଦେବ ପଦ ଧୀର
ତୁମ ଲାଗି ଥାଉ ବନ୍ଧୁ, ଦୁନିଆଁର ଦସ ଗୋ,
ଜାଣ ଥାଉ ଚିର ସାଥି ମୋର ।୨।



ଘନଶ୍ୟାମ, ଶୁଣ ମୋର ମିନତି ।୦।
ନୁହେଁ ମୁଁ ତୁମର ସାଧକ ସାଧିକା
ନୁହେ ମୁଁ ତୁମର ବରଜ ରାଧିକା
ନାହିଁ ମୋର ପ୍ରେମ, ନାହିଁ ଦରଶନ
(ନାହିଁ) ଜଳ ମରିବାକୁ ସାଇ ସାନ
ମୋର ଲୋଡ଼ା ନାହିଁ ତୁମ ପୀରତି ।୧।
ମଣେ ଯେ ତୁମକୁ ତା'ର ଆପଣାର
ଜାଣେ ମୁଁ ତାହାର ଗଲେ ଜଗ ଖ୍ୟାର
ମନ ସ୍ନେହ କର, ରହ ଦୂରେ ହର
(ତାର) ସାର ପିନା ଝୁରି ମରିବାର
ତୁମ ଛଳରୁ କେ ପାରେ ବରତି ।୨।
ବନ ଗଳି ଯା ମୁରଲୀ ଶୁଣାଇଲ
ପଦପଦକେ ପ୍ରମାଦ ଗଣାଇଲ
ସୁମରି ମରଛି, ଶ୍ରୁତି ଚମକଛି
ଝରୁଛି ଧମାର (କେତେ) ମାର ଧାର
ଜଣା କଥା ତ ନୁହଇ ଭୁଲିବାର
ଜ୍ଞହାର ଜଣାଏଁ ବାର ବାର
ଘନଶ୍ୟାମ, ଏତେ ଯେନାକର
(ମୋତେ) ଜଣାଅଛି ପ୍ରେମ କାରବାର
ତୁମେ ଦୂରେ ଥାଅ, ଦୂରେ ରହୁଥାଏଁ
ମୋର ସୁଖ ଯାଉଛି ତ ଭକତି ।୩।

---

( ୨୦୭ )

ମନ, କାହିଁ ଆସିଛୁ ଯିବୁ କାହିଁ ରେ
ଏ ଜୀବ ତୋର ଧୂପଛାଇ ରେ ।୦।
ଶତ ଚଇତନ କେହ୍ନ ସାଥି ହେବେ ନାହିଁ ରେ
ତୋ ବାଟେ ତୁ ଯିବୁ ଥିବେ ସାଇ ଭାଇ ଚାହିଁ ରେ;
ଗଛ ପଡ଼ିଲେ ତଳ—ହଂସା ତୋ ଯିବ ଉଡ଼ି
ଶାଖା ପତର କଟି—ବଳେ ପଡ଼ିବ ଝଡ଼ି
ଭାଙ୍ଗି ଯିବ ଗଛର ଛାଇ ରେ ।୧।
ଆଗମ ନିଗମ ତୋର ଅଠିକଣା ଦେଲ୍ନ ରେ,
କୁଆଁର ପୁନେଇଁ ଜହ୍ନ ସକାନ୍ଦଳ ନଥାଇ ରେ;
ଏ ସାର ତନୁ ତୋର—ନୁହଇ ନିକଡ଼ାର
ବୋଲୁ ଯା ମୋର ମୋର—ସେ ହେବେ ସାତ ପର
କେହ୍ନ ନଦେବେ ଆଡ଼େ ଚାହିଁ ରେ ।୨।
ସଜ ହୋଇ ରହ ମନ ବାଟ ବନ୍ଧା ପାଇଁ ରେ
ଏତିକ ବେଳରୁ ଭକ୍ଷ ପୁଠୁଳି ସଜାଇ ରେ,
ଅଜଣା ଯାତ୍ରା ଯିବ—ସାଥିକ ସାହା ହେବ,
ବାକ ଯା ଇଚ୍ଛିଥିବ—ସେ ସବୁ ଛେର ନେବ
ଈଶ୍ବର ଥାଅ ମନ ବାଇ ରେ ।୩।

— — —

( ୨୦୮ )

ବିରଜ-ନାଗର ମୋହନ, ଘନଶ୍ୟାମ ହେ !
ନବନୀତ ଚୋର ହରି — ଅଧରେ ମୁରଲୀ ଧରି
ରଟୁ ଥାଅ ରାଧା ରାଧା ନାମ ।୧।

ନଟ ପଟଳୀ ମୁକୁଟ — ବ୍ରଜବନ୍ଧୁ ଧୀଟ-ଘଟ
ନଗଟ କପଟ କମଠାମ ।୨।

ଭ୍ରୁରୁ ଚନ୍ଦ୍ରକ ଚୂଳଆ — ସ୍ବେର ଯମୁନା-କୂଳଆ
ରୂପ ଜଣେ ସଚେଗ କୋଟି କାମ ।୩।

ଶବଗ୍ମ ଅଳିଁଠାଣିଆ — ଗୋପୀ ମନ-ମାନ-ନଆ
ଘଇ ଭଜେ ତବ ଢନେ ଧ୍ୟାମ ।୪।

କବ୍ୱଶଣୀ ଶେଷ କାଳେ — ଶରଣ ଚରଣ ତଳେ
କୃଡ଼ାଇ ମାଗୁଛି ଗୁଣ-ଧାମ ।୫।

———

( ୧୦୯ )

ଚିର-ସୁନ୍ଦର ହେ ଚିତ୍ତ-ଚୋର !
ତୁମର ଆଶରେ, ମନ-ମାନସରେ
ଭଟ ଫୁଟେ ଶଭ ଶଭଷଳ ।।୦।।

ଆଶାରେ ଆଶାରେ ଦିନ ଗଣି
ନଣି ଆସେ ନଣି ଯାଏ ଧଣି
କେତେ ବନାଇବ ଲୁହାରେ ସ୍ମୃତିକ
କାହାରେ କହିବ ଦୁଃଖ ମୋର ।୧।

ବସନ୍ତ ଆସିଲା ଗଲା ଚାଲି
ଖଗ ମୋ ଆଖିରେ ଦେଲା ବାଲି
ବରଷାରେ ଘନ ଚମକ ବିଜୁଳି
ଗୁଲି ଦେଲା ଖାଲି ଅମା ଘୋର ।୨।

କମଳ ଆସନ ଆଖି ମୀରେ ।
ଧୋଇ ସଜାଡ଼ିଛୁ ବାରେ ବାରେ
କେତେ ଫୁଲ ଶେଯ ନିତି ବିଛୁଇଲୁ
ସବୁ ହେଲା ସିନା ନାରଖାର ।୩।

କି ଦେଲେ ଆସିବ କହ ହେଲେ
ଜୀବ ଦେବି ମୋର ଲୋଡ଼ା ଥିଲେ
ଚରଣ ତଳରେ ଫୁଲ ପାଖୁଡ଼ା ଏ
ଭେଟିଛି ଏତିକ ମାଗିବାର ।୪।

---

( ୨୧୦ )

ନମୋ, ନମୋ ଜନନୀ
ଇନ୍ଦୁ-ରଜତ-ବରଣୀ ।।୦।।
ଭୁବନ-ଫଳ ପ୍ରଦାୟିନୀ
ଭକ୍ତ-ମୋଦ ସଦାୟିନୀ
ଶ୍ୱେତ-କମଳ-ବନ ବ ସିନୀ
ଚରଣେ ପ୍ରଣମେ ଜନନୀ ।୧।

କୁନ୍ଦ-କୁସୁମ-ଦର-ହାସିନୀ
ମୋହ-ତମିର-ଦର-ନାଶିନୀ
ଜ୍ଞାନ-ମୟୂଖ-ତାର-କାଶିନୀ
ଚରଣେ ପ୍ରଣମେ ଜନନୀ ।୨।

—୦—

( ୨୧୧ )

ଶ୍ରୀରାମ ହେ, ଶ୍ରୀରାମ ହେ, ଶ୍ରୀରାମ ହେ, ଶ୍ରୀରାମ ହେ,
ଜଗଜନ ମନମୋହନ ରାମ ହେ ॥୦॥
ଶୁଭ୍ର ନବ-ଜଳଦ-ନଭ ଶ୍ୟାମ ରୁଚି, କମ କାନ୍ତିଛବି
ଅଭିରାମ ହେ ।
ସ୍ଫୁଟ କମଳ ଦଳ ବଦଳିତ ପଦ ଯୁଗଳ କାମଜିତ
ବରଠାମ ହେ ।୧।
ଆଜାନୁକର ବର-ଚାପ- ଧର ଜିତ-ଶମନ ଦର
ତବ ନାମ ହେ ।
ରଘୁବଂଶ ନଧି ଦଶବଦନ-ବଧି ପାଦ ଶରଣ
ମୋକ୍ଷର ଧାମ ହେ ।୨।
କରି ସେତୁ ବନ୍ଧନ, ରଚ ଘୋର ରଣ, ରଖିଲ
ଜାନକୀ ମାନ ହେ ।
ଉଦ୍ଧାର କର ଭବ ତାପ ହର, ଘେନ ପ୍ରଣତି ନନ୍ତ
ଗୁଣଧାମ ହେ ।୩।

---

( ୨୧୨ )

ମନ ନାଆ ମଙ୍ଗି ଠାଣ କରିଥା
ଅମାନିଆଁ ପବନରେ ସଞ୍ଚଯିବ ପାଲକଥା ।୦।
ଏ ଭବ ଘୋର ନଈ ଥଳ କୂଳ ତା ନାହିଁ
ଅଚଡ଼ା ଖାଇ ଖାଇ ଖଣ୍ଡି ତ ଯାଏ ଧୋଇ
କାହିଁ ଗାଡ଼ରୁ କଳା ଭବଥା ।୧।

ବନ୍ଧନ ଅଣଚ୍ଛଣ    ଉଡ଼ି ଯିବ ଝଟା ବାସ
କେଉଁ ନଥିବେ ପାଶ    ମଙ୍ଗ ଆଳ ଚେଠା ଆଶ
ଠକ ଦେବଟି ତାକୁ ଜଗିଥା ।୨।

ମୁଠାକୁ ଟାଣ କର    କାଚ ଜାବୁଡ଼ି ଧର
ଅଜଣା ବାଲୁଚର    ବାଟ ଭଗାର ଚୋର
ଆଖି ମେଲାଇ ପଥ ଖୋଲି ଥା ।୩।

ଉତ୍ତର କୋଣ ମାଡ଼ି    ମେଘ ମାରୁଛି ଧାଡ଼ି
ବଜ୍ରକୁଳ ଘଡ଼ଘଡ଼ି    ପାଣି ଦେବ କଣ୍ଢୁଡ଼ି
ଝଡରୁ ନାଆଟି ସମ୍ଭାଳି ଥା ।୪।

ପାଖରେ ଦେଖ ଯାହା    କେଉଁ ନୋହିବେ ସାହା
ଏ ଘୁର ଦୁଇବାହା    କହିବେ ଖାଲି ଆହା
ଚନ୍ଦ୍ରବାହାକୁ ଅନୁସରିଥା ।୫।

---

( ୨୧୩ )

ଚିରସୁନ୍ଦର ହେ, ପ୍ରିୟ ମୋର
ଦର ହସି ଆସ ଥରେ ମନ-ଚୋର ।୦।

କି ବୋଲି ଡାକେ ସେ ବରଜ ରାଧିକା
କି କରି ହେଲ ସେ ଚରଣ ସେବିକା
ଶିଖାଇ ଦିଅ ସେ ମୋହନ ମନ୍ତ୍ର
ଜାଗିବି ମୁଁ ସ୍ୱପ୍ନ ଭୋର ।୧।

ଯମୁନା କୂଳରେ ମଧୁର ଚୂଳିଆ
ଝୁରି ଝୁରି ହେଲେ ପ୍ରେମ ଆକୁଳିଆ
କହ କି ଛନ୍ଦରେ ବନ୍ଧା ପଡ଼ିଥିଲ
କି ଜାଲେ ପୀରତି ଡୋର ।୨।

ଜୁହାରୁଛି ତୋରେ ବନ୍ଧୁଆ ରତନ
ମନ କୁଞ୍ଜେ ମୋର ଆସ ଜୀବଧନ
ସାଇତି ରଖିବି କରି ମୁଁ ଯତନ
ଚରଣ ଧୂଳିକି ତୋର ।୩।

---

( ୨୧୪ )

ଆସ ବନ୍ଧୁ, ଆସ ପ୍ରିୟ !
ଆଖି ନୀରେ ଧୋଇ ସାଇତି ରଖିଛି
ଫୁଲହାର ମୋର ନିଅ ।୦।
ମୁକୁଳା ରଖିଛି ଠାକୁର ଘର ଗୋ
ଆସ ଗୋ ଦେବତା ଆସ,
ଆଶାରେ ଆଶାରେ ବିତିଯାଏ ବେଳା
ନ ହିଅ ଆଉ ପରସ
ବନ୍ଧୁ ମୋର—ଚିର ପ୍ରେମର
(ଥରେ) ଚରଣ ପରଶ ଦିଅ ।୧।
ଏଇ ତ ଆକାଶେ ବର୍ଜ୍ଜ ବିଜୁଳି
ଏଇ ତ ଚକୋର ଚନ୍ଦ୍ର,
ସୁନୀଳ ଫେନିଳ ଲହରୀ ମିଳନେ
ସାଗର ଗରଜେ ମନ୍ଦ,
ମଧୁ ମାସେ ଫୁଲ ବାସେ
(ଥରେ) ମୁରଲୀ ଅଧରେ ଛୁଅଁ ।୨।

---

( ୨୧୫ )

ମନ ରେ ! ଯିବାକୁ ତୋ ଜନମଟା ପର
ଯିବୁ ନାହିଁ କହିଲେ ତୁ ଶୁଣିବ ରେ ଧନ !
(ଏ) ଜଗର ତୋ ଲୁଟା ପାଣି ଗିରି ରେ ।୦।
ଆସିଛୁ ଜଗର କର ଡାକିଲେ ଯିବୁ ବାହାର
କଟାଳ କାହିଁକି ଆଜ ତୋର,
ଫୁଟିଲା ଝୁଡ଼ିଲା ବେଳ କଏ ରଖୁଛି ଖବର
ମଝିଁ ଜାଳ କଥା ଟିକ ସାର;
କାହାର କ କଲୁ ମନ ଦେଖ ତୁ ବାଉଳା ରେ
ସେତିକ ତୋ ସାଲଚା ପସରା ରେ
ସାଥିକ ତୋ ସ୍ୱେନ୍ଦ୍ର ଏକା ଭେଳା ।୧।
ପଲଙ୍କ ସୁପାତି ଏ ତୋ ଧନ ଦଉଲତ
କାଲିକ ଆସି ମାଲିକ ହେବେ କେତେ ଭୂତ
ଜହ୍ନୀ ଫୁଲ ସଞ୍ଜେ ଫୁଟି ସକାଳେ ଝାଉଁଳେ ରେ
ଆସିଚୁ ତୁ ଯିବୁ ଏ ତ ସାର ।୨।
ସକାଳ ସୁ ରୂପ ଆସି ବାହୁଡ଼େ ସଞ୍ଜରେ,
ବସନ୍ତ ବରଷା ଆସି ଲୁଚଇ ଖଞ୍ଜରେ;
ଆସେ ଯାଏ ଚକ ଘୂରେ ଖରା ପରେ ଚରା ରେ
ଚଲାବାଟ ଦୁନିଆଟା ସାର ।୩।
ପରକୁ ଆପଣା କର ମରେ ଫୁଲ ସୁକୁମାର
ମଧୁ ଲୁଟେ ମଦୁଆ ଭଅଁର,
ସ୍ୱେସ ମଳୟ ପବନ ଦେଖାଏ ତା ବଡ଼ପଣ
ବାସଟିକ ଲୁଟିନେଇ ତାର;
ପେଟ ଚିରି ପଶେ ପୁଣି ଚୋର

ମଣି ସେଇ ଫୁଲ ହେଲା ଦଉଁ ଗଳା-ମାଳାରେ
ନେଇ ବାନ୍ଧି, ଦେଇ ଜୀବ ଗଲା
(ଚାର) ଦଅ ମୁଁ ଲ ଦଇବ ତ ଦେଲା ରେ ।୪।

---

( ୨୧୭ )

କେଶବ କେନ ବନମାଳୀ !
ଦର୍ଶିଲେଣି ଅଂଶୁମାଳୀ
ଘେନ କରେ ଅବର ଥାଳୀ ।୦।

ଶୁଣିଲ କୋଇଲି ରୁତ
ଗୁଣୁ ଗାଏ ମଧୁବ୍ରତ
ରସି ହସେ କୁସୁମ ବାଳୀ
ହେବ ସତେ ଫୁଲ ଗଳାମାଳ ।୧।

ସର ଶାକର ଲବଣୀ
ସଜାଡ଼ୁ ଯଶୋଦା ରାଣୀ
ଡାକ ଡାକ ଗଲେ ଫେରି
ଯେତେ ଗୋପ ନଗର ଗୁଆଳୀ ।୨।

ଦାମ ସୁଦାମ ସୁବଳ
ତୋ ସଖା ମଧୁମଙ୍ଗଳ
କଲେଣି ଦୁଆରେ ଅଳ
ଉଠ ଉଠ ବେଳା ଗଲା ବଳ ।୩।

---

( ୨୧୭ )

ଭଜ ରେ ମନ, ସଜ-ସରସୀଜ ଚରଣ
ଗଜ-ନିସ୍ତାରଣଭୁଜ, ବ୍ରଜ-ସୁନ୍ଦର ମୋହନ ।୦।
ଲାଜ ରଖା ଦ୍ରୌପଦୀର
ହେଜ ରେ ମନ ପା ମର
ସଜ ହେଲେ ସାରଥିର ସାଜ ପିନ୍ଧି ପୀତାମ୍ବର
ଆଜନମ ପାପ ଦହନ ।୧।
ଗୁଞ୍ଜ-ମାଳିଆ ନାଗର
କୁଞ୍ଜ-ବନ ପ୍ରୀତି ଦ୍ୱେର
ଖଞ୍ଜ-ନୟନା ସୁଧାର — ଗଞ୍ଜ ଗରବ, ଚତୁର
ଅଞ୍ଜନ-ନନ୍ଦନ-ବରନ ।୨।

———

( ୨୧୮ )

ବିଘ୍ନ ନାଶନ, ହେ ଗଜାନନ
ଗଉରୀ ସୁତ ଜଗବନ୍ଦନ !
ମୂଷିକ-ବାହନ, ଦୁରିତଧ୍ୱଂସନ
ଗଣ[illegible] [illegible] ଦେବ ।୦।
ଭାଲେ ଶୋଭିତ ସିନ୍ଦୁର ଚନ୍ଦନ
ପାଶ ଅଙ୍କୁଶ ଧାରଣ,
କର ଦୟା ଘନେ, ବିଦ୍ୟାବର-ଧର
ଅନ୍ଧ-ଜଡ଼ତା-ନିବାରଣ ।୧।

ଚରଣରେ ତବ ହୋଇ ନିଜସ୍ଥଳି
ଝରଯେଁ କୁସୁମର ଅଞ୍ଜଳି···
ଘେନ ପୂଜା ମୋର, ଦଅ ଦେବ ! ବର
ହେ ଗିରି-ସୁତା ନନ୍ଦନ ।୨।

---

( ୨୧୯ )

ଯଦି ଏ ଜୀବନେ ଫେରିବେ ଗୋ ସାଥି
ମାଧବୀ ତଳେ,
ସେହିଁ ଆଗମନ ଆଶାରେ ନିତିରେ
ପ୍ରଦୀପ ଜାଳେ ।।୦।।
ନୟନେ ସେ ଦିନ ନୟନ ରଖି ଓଃ
ନିରେଖିଛ ବନ୍ଧୁ ରୂପର ଛବି,
ପାସୋରି ଥିଲେ ସେ ଜଗତ ଗୀତିକା
ହେଜି ଦେବ ଲତା ପରେ ଗାଇ;
ସମୀର କହିବ ବେଦନର କଥା
ଭୃଙ୍ଗ ଭୁଞ୍ଜ ପଶି ବନ ଗହଳେ ।୧।
ଯେବେ ଗୋ ଆସିବେ ଫେରି
ରହିଲ ସେ ମଥୁରା ପୁରୀ···
ଦେଖିବେ ସେ ଦିନ ନବୀନ ଯମୁନା
ଗଡ଼ୁଛି ରାଧିକା ନୟନ ଜଳେ ।୨।

---

( ୨୨୦ )

**କୋଟି-ଶଶୀ-ବିଜୟିତ ମୁଖ-କାନ୍ତି !**
ଉଦୟେ ତବ ଦୂରେ ଦୁଃଖ-ଗ୍ଲାନି,
ବିମଳ ତବ ହାସ ତଳେ ତପନ ଛବି ଖେଳଇ
ନୟନ ତଳେ ମୂର୍ତ୍ତିମନ୍ତ ଶାନ୍ତି ।୦।
ଅମଳ ତବ ଚରଣ ଧୂଳି ଲଭି
କମଳ ବନେ ଫୁଟିଲା ଶତ ଆଖି
ଭୃଙ୍ଗ ମନ, ଗୁଞ୍ଜି ଘନ ମତ୍ତ ମଧୁ ଲାଳସେ
ଦିବସ ନିଶି ଭରମେ ନଚିମାଖି
ଯାମିନୀ ଜାଗି ରହିଛି ମୁଁ ଅତିଥି ତବ ଆଶମେ
କୁଞ୍ଜ-ଫୁଲ-ଦଳ ତଳପ ପାତି ।୧।
ମଳୟେ ତବ ଅଙ୍ଗ ଫୁଲ ବାସେ
ତପନ ମନ କ୍ଲାନ୍ତି ନିତି ନାଶେ
ପ୍ରୀତି ଘନ ସିନ୍ଧୁ ଶତ ଅରୁଣ ମଧୁ ହାସରେ
ବିହଗ ଦଳ କଳକଣ୍ଠେ ଭାଷେ
କର ସରସ ପରଶ ଲଭି ସପନ ଚେତି ରହିଲି
ବିଜୟ ମମ କୁଞ୍ଜେ ଚିର ସାଥୀ ।୨।

—o—

( ୨୨୧ )

**ଦେଖା** ଦେଲେ ସଖା ଏ ବନେ ବସନ୍ତ ଦିନେ
ସାଜବି ଭୂମିକୁ ଫୁଟା ବଉଳରେ
(ମୋର) ବଡ଼ ସାଧ ଅଛି ମନେ

ମଳୟ୍ ପବଣି ଫିଟାଇଛି ମୋର
ମରମ କବାଟ ବେନ
ସଜାଡ଼ି ରଖିଛି ପଞ୍ଚ-ପ୍ରଦୀପ
ଧୂପ ଚନ୍ଦନ ଯେନ ।
ସବୁଣରୁ ପ୍ରିୟ ମୋର
କଥା କଅ ମନ ଚୋର
ଚରଣ ଧୂଳିରେ ସରସ କରିବ କୁଞ୍ଜ ଭବନ ଯନେ
ଜନମ ସରଣେ ଶତ ତାପ ସିନା ଭୁଞ୍ଜିବ ଏ ଜୀବନେ ।

—୦—

( ୨୨୨ )

ତୁମେ ସତ୍ୟ, ତୁମେ ନିତ୍ୟ, ତୁମେ ହେ ମଙ୍ଗଳମୟ,
ଢାଳିଦିଅ ଶିରେ ମୋର ସୁଖ ଦୁଃଖ ଢାଳିଦିଅ ।
ତୁମେ ବ୍ରହ୍ମ, ତୁମେ ଶକ୍ତି
ତୁମେ ଭକ୍ତି, ତୁମେ ମୁକ୍ତି
ତୁମେ ହେ ପୁରାଣ ବେଦ ଯୁକ୍ତି ତର୍କ ଅଗୋଚର ।୧।
ନଶି ଦିନ ପାଶେ ପାଶେ
ତୁମରି ପ୍ରେମ ବିକାଶେ
ତୁମେ ମୋର, ମୁଁ ତୁମର, ତୁମେ ବିଶ୍ୱର ଆଶ୍ରୟ ।୨।
ନାହିଁ ଗତି ତୁମ ବିନା
ଜୀବର କାରଣ ଜନ,
ତୁମ ନାମ ଚିଦାନନ୍ଦ ପରଂବ୍ରହ୍ମ ଜୟ ଜୟ ।୩।

—— ——

( ୨୨୩ )

## ଗିରିଧାରୀ—ଗିରିଧାରୀ !

ମନମନ୍ଦିର ଉଜ୍ଜ୍ୱଳ କର ଆରେ ସୁନ୍ଦର ।
ଚରଣେ ଶରଣ ବ୍ରଜନାରୀ ।୦।
କଞ୍ଜ-ଚରଣ ଭରି ନୂପୁର ବାଜେ
ପୀତ ବସନ ବର ଅଙ୍ଗେ ବିରାଜେ
କୁଞ୍ଜ-ଭବନେ ବଜାଅ ମୁରଲୀ
ଝୁରି ଝୁରି ଫୁକାରି ।୧।
କନକ କେୟୂର କୁଣ୍ଡଳଧାରୀ
କାନ୍ତ ମଞ୍ଜୁଳ ନବଘନ-ହାରୀ
ପ୍ରୀତି ଫୁଲ ଚନ୍ଦନ ଘେନ ବ୍ରଜସୁନ୍ଦର !
ବୃନ୍ଦାବନ-ବନଚାରୀ ।୨।

———

( ୨୨୪ )

ଜଗବନ୍ଧୁ ଭଲ ନାଟୁଆ,
ଭବ ଦାଣ୍ଡଆରେ ଲଗାଏ ନଅାଁ ।୦।
ପୋକା କନ୍ଦ ଅଚାଣ୍ଡା ସାରୁ
ସୁଖେ ଖାଏ ସେ ଉଷୁଁ ଦାରୁ
ଭଲ କାରିଗର ବାହାଦୁରୀ ତାର
ଗୁଡ଼ ଦେଖା ନାହିଁ ବନାଏଁ ମୁଆଁ ।୧।
ବାଣ୍ଡିଠାରୁ ଖଣ୍ଡିଙ୍କ ଯାଏଁ
ଚିତାକଟା ଏଠି ସବୁଏଁ

ମଶା, ମୂଷା, ମାଛି, ମାଢ଼ାଙ୍କ-ମହନ୍ତ
ମାଙ୍କଡ଼ ପୋଷା ଏ ନଦଭଲ ଦୁଆ ।୨।

---

( ୨୨୫ )

ମନ ସେପାରି କଥା ଭାବନ ଖ୍ରବଲୁ ନାହିଁ—
ବସିଛୁ ପାରିକେକୁ ଯମୁନା ନଈ ।୦।
ଦଉଡ଼ ନାଆ ଗୋଟି—ମେଘ ଆସୁଛି ଘୋଟି
ଝଞ୍ଜା ପବନ ପୁଣି ତା ଭୁଲେ ବାଇ ।୧।
ବଣ୍ଟିବ ଅଣଗଣ—ସରିବ ସବୁ ଆଶ
ସାଙ୍ଗ ନୋହିବେ ତୋର ପିଅର ଭାଇ ।୨।
ଏ ତୋର ଛୁଣ୍ଡା ଶାଳ—ଦାଉ ମାରିବ କୋଳ
ବୋଲ ନ ମାନ ନାଆ ଯିବ ଉଭାଇ ।୩।

---

( ୨୨୬ )

କାହ୍ନ ଦଅ ମୋତେ ଜାଣେ ଜାଣେ ବନ୍ଧୁ !
ଜା ବୋଲିଲେ ତୁମେ ଶୁଣ,
ଶିଖାଇ ଦଅ ଗୋ ଗାଇଲେ ଜ ରାଗେ
ଫୁଟିବ ତୁମର ଗୁଣ ।୦।
ଜ ତାଳ ଧରିଲେ ଲେଖି ମୁଁ ପାରିବ
ତୁମର ମେ ହଜ ଛବ—
ଜ ରସେ କବିତା ଲେଖିବ, ଦେବ ମୁଁ
ତୁମର ବରଣ୍ଣ କବ;

କି ସୁରେ ବାନ୍ଧିବ ବୀଣା—
ହେବ ତୁମ ମନ ଜଣା,
ଭ୍ରମ କମଚ୍ଛବ ଦୋଳାରେ ନାଚବ,
ମାନବ ଅବୁଝା ମନ ।୧।

———

( ୨୨୭ )

ଦୀନବନ୍ଧୁ,
ମନେ ମନେ ଭାବେ ମୁହିଁ ।
ବାପ ପୁଅରେ ତ                ଦୁଃଖ ସୁଖ ପଦେ
ଢନେ ହେଲେ ହେଲେଁ ନାହିଁ ।୩।
ମଲି ଅବା ଗଲି, କଲି କି ନକଲି
ପଚାରିଲ ତୁମେ କାହିଁ
କେଉଁ ଗୁଣେ ସତେ, ଜନ୍ମିବଟି ମତେ
ବୋଲାଅ ଜଗତ ସାଇଁ ।୧।
ମୁଁ ଯେବେ ମୋ ଦୁଃଖ, କଲା ଶିରୀମୂଖ !
ନଜେ ହେଉଥିବ ଗ ଭ,
କାହିଁକ କହ ତ, ବସିଛ ପତିତ—
ପାବନ ବାନା ଉଡ଼ାଇ ।୨।
ଚେବେକେବେ ଏ ମନ କରଇ ବସ୍ଥାନ
ବୁଝି ସେ ଅବୁଝ ହୋଇ,
ଢନ ମୋର ସବୁ—ଯିବ ଯିବା ହଣ,
ନ ଦେଖିବ ଥରେ ଚାହିଁ ।୩।

କାନ୍ଦୁଛି-କାନ୍ଦୁଛି,, ବାନ୍ଧୁଛି-ବାନ୍ଧୁଛି,
ରଖୁଛି ଏତିକ କଥା,
ଯାହା କର ଏବେ, ଜୀବ ଯିବ ଯେବେ,
ଦେବଟି ଚରଣେ ଠାଇଁ ।୪।

---

( ୨୨୮ )

ବଡ ଦେଉଳେ ବଡ ଠାଅଁ କାହିଁକି ?
ବଡ ଦେଉଳ ଲାଜ ନାହିଁକି ? ।୦।
ବଡ଼ ଠାଅଁ ବଡ଼ ଠାଅଁ ପଡ଼ୁଛି ହୁରି (ହରି ହେ)
ବଡ଼ତି କରିଛ କହ କାହିଁ କାହାରି ?
ଧରମ ପାପ ଯାହା—କଲି ଭୋଗିଲି ତାହା !
ଆହା ପଦକୁ ସାହା, ନାହିଁ କେ ତହିଁବାହା,
ମୋ କରମ ବଦଳ ନାହିଁ ତ ତୁମ ବଳ
କି ହେବ ହେ ପ୍ରଭୁପଣ ଥାଇକି ? ।୧।
ଆପଣା କରମ ଯେବେ ଭୁଞ୍ଜିବା ଲେଖା
କାହିଁକି ବେ ଲଖ ଦୀନ ଜନର ସଖା ?
କରମ ବଳ ଥିଲେ, ସୁଫଳ ଫଳେ ବଳେ
ଅବଳ ବଳକୁ ନାହିଁ କେ ଶୁଣିବାକୁ
ସୁଖର ସାଥୀ ସବ ତୁମେ ମୁରଲୀଧର !
ରାଧା ମରିଛି ଗୁଣ ଗାଇକି ।୨।

---

( ୧୨୯ )

ବିଘ୍ନହର କରୁଣା ଭଜ, ପ୍ରଣମେ
ନିଖିଳ-ଦୁରିତ-ହାସ !
ବନ୍ଦେ ଶିବ ନଗ-ନନ୍ଦିନୀ-ସୁତ ହେ,
ନିଖିଳ-ଦୂରିତ-ହାସ ।୦।
ପାଶାଙ୍କୁଶ-ଧର ଗଣ-ଅଧିନାୟକ
ଅଜ୍ଞ ତମସା ଦୂରକାସ,
ଇନ୍ଦୁର ବାହନ, ହେ ଗଜ ଆନନ,
ସୁର ନର ମାନସରଞ୍ଜ ।୧।
ନାଶ କର ହର ଅନ୍ତର କଳୁଷେ
ଦାସ ଜନେ ଦିଅ ତାରି,
ଲମ୍ବୋଦର ଗିରିଜା-ନନ୍ଦନ ହେ,
ଦିଅ କରୁଣାମୃତ ବାରି ।୨।
ନାହିଁ ନାହିଁ ଭକତି, ସୁମତି ମୋର
ନାମ ମାତ୍ର ଜପକାସ,
ଶରଣ ମାଗେ କବିଚନ୍ଦ୍ର ଚରଣ ତଳେ
କୁସୁମାଞ୍ଜଳି [illegible] ଲାଗି ।୩।

— — —

( ୧୩୦ )

ନବଘନ ସୁନ୍ଦର ହେ
ରାଧିକା ଚିତ୍ତ-ବନ ମଧୁକର ।୦।

ଧୀରେ ଶିଖ ନନ୍ଦକୃଷ୍ଣ କୁଞ୍ଜ-ବିପିନ-କୃଷ୍ଣ
କାଳୀୟ ମର୍ଦ୍ଦନ ଗିରିବର ଧାରୀ-ମୁରାରି, ମୁରାରି, ମୁରାରି
କଞ୍ଜ ଚରଣେ କମ ନୂପୁର ହେ ଘନ ସୁନ୍ଦରି,
ସୁନ୍ଦର, ସୁନ୍ଦର ।୧।
ଚନ୍ଦନ ସ୍ଥ‌ରୁ-ଚକ୍‌ଚକଣ ଚୂଳେ ଶିଖି-ଚନ୍ଦ୍ରିକା ସାଜି
ମନ୍ଦ ମଳୟେ ନଟନ କରନ୍ତ କଣ୍ଠେ ଲଗନ ବନମାଳୀ
ମୁରାରି, ମୁରାରି, ମୁରାରି—
ଭକ୍ତମାନସ ନାଗର ହେ—ଘନସୁନ୍ଦର, ସୁନ୍ଦର, ସୁନ୍ଦର ।୨।

———

( ୨୩୧ )

ଦୀନବନ୍ଧୁ ହେ, ସତ କହିବ ମୋତେ
ତୁଛଇଁ ଚକାଡ଼ୋଳା ଆପଣା ହାତେ ।୦।
ମୋ ବିପଦେ ମୁଁ ତ ଡାକଇଁ ତୁମ୍ଭଙ୍କୁ
ଆହା କରି ହେବ ବୋଲି ମୋ ସାହା,
ତୁମ ବିପଦରେ, କିଏ ସେ ରଖିବ,
କାହା ନାମ ଧରି ତରିବ ସତେ ? ।୧।
'ବାପ ମୋର କିଏ' ପଚାରିଲେ ମୁଁ ତ
କହିବ ନୁହେଁ ମୁଁ ଅଣବାବୁଆ,
ଜଗନ୍ନାଥ ମୋର ବାପ ବସିଛନ୍ତି
ତୁମ ବାପ କିଏ କହ ଜଗତେ ।୨।
ଅଣବାବୁ ବୋଲି, ଲୋକେ ପରା ମୁଖେ
କାଳ ବୋଲଅଛ ଆପେ ଗୋବିନ୍ଦ,

ଛନ୍ଦ ଗୁଡ଼ ଆଜ, ବଚାଅ ହରି ହେ,
ତୁମ କୁଳ ଗୋପ ଯିବ ପରଚେ ।୩।

———

( ୨୩୨ )

ଅମଳ କମଳ ଚରଣ ତଳକୁ ଭ୍ରମରା—
ମନ ଭ୍ରମରା ତୁ ଉଡ଼ିଚାଲ ରେ
ବାଇ ପରା ତୁହି ଧନ୍ଦ ହୁଅ ନାହିଁ
ନୟନ କବାଟି ଖୋଲ ରେ ।୦।
ହେମ ରତନରେ ସଜଡ଼ା ପାଖୁଡ଼ା
ନୀଳ ମରକତ ବେଢ଼ା,
ସଞ୍ଜ ସକାଳେ ସେ ଫୁଲୁଛି ଝୁଲୁଛି
ମଧୁ ମକରନ୍ଦ ଭରା ରେ
ତାର ଅମୂଲ୍ୟ ମୂଲ—ମନଟାଣଟି କରିଥା ମୂଲ ରେ
ଉଡ଼ ଚାଲ, ଉଡ଼ଚାଲ ମନ, ଉଡ଼ ଚାଲରେ
ମନଭ୍ରମରା—।୧।
ଆକାଶ ପାତାଳେ କାହିଁ ସେ ନ ଫୁଟେ
ପାଣି ପବନ ନ କାଟେ (ତାକୁ),
କର ବଢ଼ାଇଲେ, ଦୂରେ ସେ ଯାଉଛି
ମନ ତଳେ ଘୁଁଏ ଫୁଟେ;
ତାର ନାହାକା ଚେର,
ଚରି ରହିଛି ବଡ଼ ଗଧିରେ—ଉଡ଼ ଚାଲ
ଉଡ଼ ଚାଲ ମନ ଉଡ଼ ଚାଲ ରେ
ମନ ଭ୍ରମରା ।୨।

———

( ୨୩୩ )

ଶ୍ୟାମ ସାଙ୍ଗ ବନ ଯାଉ ରେ
ଶ୍ୟାମ ନାମ ମନ ଗାଉ ।୦।
ସୁନ୍ଦର ଶ୍ୟାମ ଲଳିତ କଳେବର
ଚଞ୍ଚଳ ନେତ୍ର ତ୍ରିଭଙ୍ଗ,
କୁଞ୍ଜ ପଟେ ନବ ସଜ୍ଜେ, ମନୋହର—
ନୃତ୍ୟ ଭଙ୍ଗି ଦେଖି ଥାଉ ରେ ।୧।
ଚନ୍ଦନ ମଞ୍ଜୁଳ ଚୂଳ ବିଲେପିତ
ଅଙ୍ଗ ଗନ୍ଧ ପରକାଶେ,
ଅଧରେ ମନୋହର ମୁରଲୀ ତାନ ମନ
କାନେ କାନେ ଶୁଣୁ ଥାଉ ରେ ।୨।

———

( ୨୩୪ )

ଜୟ ଜଗଜ୍ଜ ପ୍ରଭୁ ନମିତ୍ର ଆଜ ସବୁ
ତୋ କଥା ତୁ ଜାଣୁ ମହିମା !
ଅନ୍ତରେ ତେଜ ସାହା ତୁ ପୁଣି ଚରାଚର
ଚଧିରେ ଅଜଣା ତୋ ସୀମା
ହେ ମହାବାହୁ,
ତୁ ଏକା ତୋହର ଉପମା;
ଘଡ଼ି ଘଡ଼କେ ଆନ ମନ ବଚନ ଜ୍ଞାନ
ଗୋଚର ନୁହେଁ ତୋ ଗରିମା
ହେ ମହାବାହୁ ।୧।

ଦେଇ ବଢ଼ାଇ ହର   ରଖ ମାନ ତୁ ହର !
ଏ ଖେଳ ତୋହର ଭିଆଣ
ବଡ଼ ପ୍ରଥର ଘରେ   ଖଣ୍ଡ ଦାରୁ ଭିତରେ
ବୋଲାଉ ପତିତ ପାବନ
ହେ ମହାବାହୁ,
ପଡ଼ ତଳେ ଏ ମାଥ ଥାଉ;
ଧନ ରତନ ମଣି   ନ ମାଗେ ଚିନ୍ତାମଣି,
ତୋ ନାମ ଧରି ଜୀବ ଯାଉ
ହେ ମହାବାହୁ ।୨।

---

( ୨୩୫ )

ମନ ବାଉଳାରେ,
ତୁ ତ ଭଙ୍ଗା ଘରର କୁଣିଆ ।୦।
କହିଲୁ କେ ତୋହର   କଏ ଭାଇ ପିଅର
କେହି ନୁହେ କାହାର   ଅନ୍ଧାର କାରବାର
ସଭିଏଁ ସାଥି ଦୁଇଦିନିଆ ।୧।
ଏ ମାଟି ଗାଆଁ ଭୂଇଁ   ତୋହର ହେଉ କହି
କାହୁଁ ଆସିଛୁ ବହି,   କାହିଁ ତୁ ଯିବୁ ଧୋଇ
ନେବୁ କି ଖଟ ପାଟ-ତଣିଆ ।୨।
ଛନ୍ଦ କପଟ ମାୟା   ଦେଖ ଏ ତୋର କାୟା
ଜାଣୁ ଜାଣୁ ରେ ବାୟା   ସତ ମଣୁ ତୁ ଛାୟା
ଭାଙ୍ଗି ଯିବ ଏ ଠାଣ-ପଣିଆ ।୩।

ସତକୁ ସାର କର          ଗପ୍ପାଳୀ ଜଡ଼ ମାର
ସଂଖାଳ ସେଣ୍ଟ ତୋର          ଭବ ସାଗରୁ ତର
ଆଜ ସବୁ ଅଗାଡ଼ କଣିଆ ।୮।

———

( ୨୩୬ )

ଜନନୀ ଜୟ ଜୟ          ସକଳ ସୁଖମୟ
ସଦା ମଙ୍ଗଳ କାରିଣୀ,
ଖଡ୍‌ଗ ଖର୍ପର          ଶୂଳ ଧାରିଣୀ
ହର ହୃଦୟ-ପର ସ୍ଫୁରଣୀ ।୦।
ସୁରନାଗ କୃପା-ପ୍ରଦାୟିନୀ ଶମ୍ଭୁ-ମାନସ-ହାରିଣୀ,
କର ଦୟା ଧାନେ ସିଂହ-ବାହିନୀ,
ମହିଷ ଖଳ ଗର ନାଶିନୀ ।୧।
ଶକ୍ତି ମୁକ୍ତି ବିଧାୟିନୀ ଦେବୀ ଗିରିରାଜ-ବର-ନନ୍ଦିନୀ
କାଳିକେ, ନର-ମୁଣ୍ଡ ମାଳିକେ
ଚଣ୍ଡୀକେ, ଦର-ବାରିଣୀ ।୨।
ଭକ୍ତ-ଜନ ମନ ପୂର୍ତ୍ତି-କାରିଣୀ ଶକ୍ତିରୂପ ସନାତନୀ
ଚରଣ ତଳେ ତବ, ପ୍ରଣତ ଭବଜୀବ,
ମିନତି ଘେନ ଜଗ-ବନ୍ଦିନୀ ।୩।

———

( ୨୩୭ )

ଶୁଣ ମନମୋହନ, ଡାକେ ଭିଖାରୀ ।୦।
କାହାରେ ଦେଇଛ ଧନ          ମାଗିଛି କଏ ରତନ
କାହାଲାଗି ଚୋଳଛ ଗିରି,

ବାସ ଦେଇ କାହା ମାନ ରଖିଛ ହେ ନାରାୟଣ
କେତେ କଥା କାନେ ଶୁଣିଲ ।୧।
କାହାକୁ ଦେଇଛ ମନ ଭୁବନ-ଭୁଲ ନୟନ
ଯେଉଁ ଗଲ ରାଧା ଗୁଆଳୀ,
ଖେଳ ମେଳ ଶିଖି ଚୂଳ ଝୁରୁ ଚରଣ ନୂପୁର
କାହା କରେ ଦେଇଛ ତୋଳ ।୨।
କଏ କହେ ଦୟାସିନ୍ଧୁ ମାଗଇ କରୁଣା ବିନ୍ଦୁ
ଯୋଗୀ ଜପେ ମୁକତି ଲାଳ,
ପୀରତି ଅବା ମୁକତି ମାଗୁନାହିଁ ଶ୍ରୀପତି
ରଖିଥା’ ଭଣ୍ଡାର ଭରି ।୩।
ବନଫୁଲ ବନମାଳୀ ବରଜ ପଥରେ ଝୁଲି
ଲାଗିଥିବ ପଦୁରେ ଧୂଳି,
ଏ ମୋ ପୋଡ଼ା ଆଖି ଭରି ଯାଉଛି ଆଣିଛି ବାରି
ଧୋଇଦେବ କହୁଛି ଖାଲି ।୪।

---

( ୨୩୮ )

**ଯେବେ ମିଳନ୍ତି ଗିରିଧାରୀ ।୦।**

ଭଣ୍ଡାରେ ସାଇତା ଯେତେ ଦୁଃଖ ଅଛି
ଢାଳିଦେଇ ସବୁ ମଥା ପଛାଉଛି
କାଳିନ୍ଦୀ ଖାଲି ଗଢ଼ିବ ଯମୁନା
ଯୋଡ଼ା ଆଖି ଲୁହ ଢାଳି,
ନଉକା ଭସାଇ ତୁମେ ହେ କହ୍ନାଇ
ପହଁରି କରିବ ପାରି ।୧।

ତ ବୁକାରେ ମୋର ଉଚ୍ଛୁଳୁ ଥିବ ତ
ଛୁଇଁ ଛୁଇଁ ତୁମ ଚରଣ ପ୍ରାନ୍ତ
ବୁଢ଼ ଅସୁଥିବ ମେଘ କାନ୍ଥି ତଳେ
ଦିନ ରତ ନାଲି ବୋଳି
ଅନ୍ଧାରେ ଡରି ଯାଉଥିବ ଯେବେ
ବାହୁଡ଼ ବସାକୁ ଫେରି,
ସେଇ ସଞ୍ଜବେଳେ ଜଗି ଥିବ ତୁମେ
ନାଆ ମଙ୍ଗେ କାତ ଧରି ।୨।

—o—

( ୨୩୯ )

କରୁଣାମୟୀ ଉମା, ନଗେନ୍ଦ୍ରବର ରମା
ମହିଷ-ମର୍ଦ୍ଦିନୀ ଶଙ୍କରୀ !
ତ୍ରିଜଗତ ଜନନୀ ଦେହିନ ମା' କାତ୍ୟାୟନୀ
ଚରଣ ତଳେ ମୋ ଗୁହାରି ।
ଗୋ ଭଗବତି !
ତୁ ପରା ତିର ଦୟାବତୀ,
ହୀନ କରମ ଫଳ କରିବାରେ ବିଫଳ
ନାହିଁ କି ତୋହର ଶକତି ॥୧॥
ଦୁର୍ଲଭ ବୋଲି ଗାଢ଼ା ନ ବୋଲି ପଦେ ଆଡ଼ା
ଅଥଳେ ଦେବୁକି ଭସାଇ
କରି କରମ ହୀନ କାଏ ଦେଲୁ ଜନମ
ଗୋ ଦୟାମୟୀ !
ମଥାରେ ମୋର କର ଦେଇ,

ସନ୍ତାନ ଦୁଃଖ ହେରି      ସହିବୁ ତୁ କପରି
ଦୟା କି ତିଳେ ତୋର ନାହିଁ ? ।୨।
ଏ ଆଖି ଲୁହ ଝରା      ଦେଖି ଯେବେ ଗୋ ତାରା
ଆନନ୍ଦ ହେବ ତୋ ଅନ୍ତର,
ପାରୁଛୁ ଶିର ମୋର      ଯେତେ ଇଚ୍ଛା ତୋହର
ଜାଣ ମା ତାଳ ଦୁଃଖ ଭାର
ଗୋ କୃପାମୟୀ,
କରୁଣା ନ କଲେ ତୁ ନାହିଁ
କାନ୍ତଚନ୍ଦ୍ର କହଇ      ପଦେ ଜାଣ ଏଡ଼ାଇ
ଏ ଜୀବ ଯାଉ ପଦ ଛୁଇଁ ।୨।

---

( ୨୪୦ )

ପାଷାଣ ତନୟା ବୋଲି ପାଷାଣୀ ହେଲୁ କି ତାରା
ମୋ ଲାଗି ଶୁଖିଲା କି ଗୋ କରୁଣା ସରିତ ଧାରା ।୦।
ଚଡ଼କ ଯେବେ ଗୋ ଘନେ
ଗରଜେ ବରଷା ଦିନେ
ଜନନୀ କୋଳରେ ଯେନେ
ଅବୋଧ ସନ୍ତାନେ ପଶ
ପାସୋରିଲୁ ମନରୁ ମା' ସେ କଥାକି ଦୁଃଖ-ହରା ? ।୧।
ମରୀଚିକା ପଛେ ଧାଇଁ
ଦେଇଛି ଦିନ ଗମାଇଁ
ଆଜି ମୁଁ ଅନାଇଁ ନାହିଁ
ଯେବେ ଥିଲା ନଭେ ଖରା,
ଫେରୁଛି ତୋ ପଦେ ଏବେ ଦିନ ଶେଷେ ହେଉ ତାରା ! ।୨।

ଚରଣେ ଶରଣ ଦେଇ,
ରଖ ରଖ ଦୟାମୟୀ !
ନାହିଁ ନାହିଁ ସାହା କେହି,
ଖୋଜଛୁ ଦୁନିଆଁ ସାରା
କବିଚନ୍ଦ୍ର କହେ ଶେଷେ ଝରଇ ନୟନ ଧାରା ।୩।

———

( ୨୪୧ )

ଭୁବନ-ମୋହିନୀ ଜନନୀ ବନ୍ଦେ
ନିଖିଳ-ଜନ ଗୁଣ ଗାଏ ଆନନ୍ଦେ ।୦।
ଚନ୍ଦ୍ରଶେଖର-ଚିତ୍ତ-ମୋହିନୀ,
ନାଗ ସୁର-ଜନ ଚିର-ବନ୍ଦିନୀ !
ଶକ୍ତି ମୁକ୍ତି ପ୍ରଦାୟିନୀ, ତବ ନାମ ସୁମରଣ ନନ୍ଦେ ।୧।
ଦୁଃଖ-ହାରିଣୀ, ବିପଦ ତାରିଣୀ
ସିଂହ-ବାହିନୀ ଜୟ ତ୍ରିନୟନୀ
ପ୍ରଣତଜନ ହିତକାରିଣୀ, ମୁନି ଗାଏ ନିତି ବେଦ ଛନ୍ଦେ ।୨।
ଅଭୟ-ବରଦା ଦେବୀ ଶୁଭଦା !
କବିଚନ୍ଦ୍ର-ଗତି ଜନନୀ ସୁଖଦା !
ପ୍ରଣତି ଘେନ ଶିବାଣୀ ଗୋ ! ପଦ କୋଟି ଶଶିକର ନନ୍ଦେ ।୩।

—o—

( ୨୪୨ )

ଦୁନିଆଁ ହ'ନିଆଁ ଭସା, ବାଉଳି ସତେଛ ପରେ
ଦହିଆ ଜଳୁଛି ନିତି ଆଖିରୁ ନୀର ଝରେ ।୦।

ଆସିଲି ବନ ଗୃହକୁ, ଦେଖିଲି ଏ ଧରା-ଘରେ
ପ୍ରଜଳି ବ'ଧନ ପାରେ, ଯାଗି ମୁଁ ନଶି ଜାଗରେ
ଟାକିଲି ବାଳ ବ'ଧନ, ଯା ପଥେ କରି ଆଶରେ
ଗୁଇ ତା ନ ଦେଲି ଧରା ସପନେ ଦେଲେ ପାଣରେ ।୧।
ଆଜ ରେ ସରିଲି ଯେବେ, ମୋ ବନ ଏ ଧରା ପ ଟେ
ନାହିଁତ ଶମଶାନରେ ମୋର ହାତକ ଥାନରେ
ଏଥିକି କହେଁ ସାଥିରେ ! ଆସନା କେବଳ ଏ ଘରେ
ଯେ କହେ ମରଣେ ସୁଧା, ଲୁଖୁ ସେ ଜୀବନେ ଥରେ ।୨।

— — —

( ୨୪୩ )

ଜୟ ଜୟ ରାମ ଜୟ ଶ୍ରୀରାମ
ଭବଭୟ-ନାଶନ ଜୟ ଜୟ ରାମ ।୦।
କୌଶଲ୍ୟା ସୁଖ—କାରଣ ରାମ
ଦଶରଥ-ମାନସ—ତୋଷଣ ରାମ ।୧।
ଅଗଣିତ ଗୁଣଗଣ—ଭୂଷଣ ରାମ
ବଦଳିତ ଖଳ-ଖର-ଦୂଷଣ ରାମ ।୨।
ଗୁରୁତର ହର-ଧନୁ-ଭଞ୍ଜନ ରାମ
ଜନକସୁତା-ମନ—ରଞ୍ଜନ ରାମ ।୩।
ପରଶୁରାମ ଗର—ଗଞ୍ଜନ ରାମ
ମୁନିଜନ-ଲୋଚନ—ଅଞ୍ଜନ ରାମ ।୪।
ପିତୃ-ସତ୍ୟ-ପରିପାଳକ ରାମ
ରାଜକ୍ଲେଶ ପରିହାରକ ରା ।୫।

ପଞ୍ଚବଟୀ ବନ-ସ୍ଥଳକ ରାମ
ମାୟା-ମୃଗ ବଧ-କାରକ ରାମ ।୭।
ସୁଗ୍ରୀବ ଖେଦ-ନିବାରକ ରାମ
ବାଳି-ନିଦ୍ଧନ-କାରକ ରାମ ।୭।
କପିବର ହନୁମନ-ନନ୍ଦକ ରାମ
ସାଗର ସେତୁ ନିବନ୍ଧକ ରାମ ।୮।
ରାବଣ-ବଂଶ-ନିପାତକ ରାମ
ସୁର-ମୁନିଜନ-ଅଘ ଘାତକ ରାମ ।୯।
ବିଭୀଷଣ-ଛତ୍ର-ପ୍ରଦାୟକ ରାମ
ନ୍ୟାୟ ଦଣ୍ଡବର-ଦାୟକ ରାମ ।୧୦।
ସିଂହାସନ ଅଧି-ନାୟକ ରାମ
ଜନଗଣମନ ସୁଖ-ଦାୟକ ରାମ। ୧୧।
ନିଜ-ସୁଖ-ଭଞ୍ଜକ ରାଜା ରାମ,
ଜନକ-ସୁତା-ପରିବର୍ଜକ ରାମ।
ଅଶ୍ୱମେଧ ବ୍ରତ-ସର୍ଜକ ରାମ,
ସ୍ୱର୍ଣ୍ଣମୂର୍ତ୍ତି ଅଭିଷେକା ରାମ
ସୀତା ରାମ !
ଜୟ ଜୟ ରାମ ଜୟ ଜୟ ରାମ
ଜନକ ସୁତା-ବର ରାଜାରାମ !

---

( ୨୪୪ )

ଘର କାହିଁ, କାହିଁ ଥାଅ (କହ ମୋତେ) ।୦।
କଜଳ ମେଘରେ ଯେବେ ସଜଳ ବାଦଲ ଧାଏଁ
କୁହାଟ ପଛରେ ଯେବେ ଚହଟ ବଜ୍ରକ ଗୃହେଁ,

ଝୁମୁ ଝୁମୁ ବାଉଝର,   ନେଇ ନ ଭ୍ରମର ନୂପୁର
ନାଚୁଆ ପଣରେ ଛନ୍ଦ ଟେକ ସେତେ ଦେହ-ଛପା କଆଁ ଦିଅ ? ।୧।
ଯେବେ କଜଳ ବଣରେ   ଗହଳ ଚହଳ   ପଡ଼େ
ଯେବେ ଚଗଲି କୋଇଲି   କୁହୁ କୁହୁ ଡାକ ଗୁଡ଼େ
ପବନ ମଧୁ-ମାସିଆ
ମହକ ଫୁଲ-ରସିଆ,
କୁଞ୍ଜ କୁଟୀର ଭ୍ରମ-ପଥ ଶେଯେ, ଅନ୍ତର କୋଳେ କ ଦିଅଁ ? ।୨।
(ତବେ) ଆକାଶ ପାତାଳ, ସାଗ୍ର ଜଳଥଳ,
ଅନ୍ଧାରେ ହେଲି ମୁଁ ଖୋଜ,
(ସତେ) ଫୁଟିଗଲା ଆଖି ତୁଟିଗଲା ଚେତା
କେତେ କଣ୍ଟା ବୁଦା ବାଜ,
ଫାଙ୍କାଣି ବୁଲିଲା ମୋର—ତୁମେ ସତେ ଏତେ ନିଷ୍ଠୁର
ଘଟ-ଘଉ କୋଣେ ପଟ ଦେଖିକରି ଦରହସି ମନେ ରହିଁ ।୩।
ପୂଜାରେ ଜପରେ,  ମାନ୍ଦରେ ତପରେ
ଜାଣିଲି ସଗ୍ର ନାହିଁ,
ଜଗଚନ୍ଦ୍ର ବୋଲେ ଦିଆ ନିଆ କରି
ତମକୁ ପାଇବ କେହି ?
ଗାଳି ମନ୍ଦ ଦେଇ ଦେଇ   ଥକନ୍ତ ଗଲଣି ସାଇଁ !
ନ ହେଲେ, ନ କଲେ ଥିବ ସବୁକାଳେ, ଜୁହାର ହେଉଛି କହ ।୪।

— — —

( ୨୪୫ )

ଥରେ ବଜା ବନେ ମୁରଲି
ମନ-କୁଞ୍ଜବନେ ବହରି ବହରି ।।୦।।
ଫୁଲ ଗନ୍ଧ ଚଳେ—ମନ ମାପ ଚଳେ
ଯମୁନାର ଜଳେ, ଛୁଇଁ ଛୁଇଁ ଥରେ,

ମୁଁ ତ ଚାହିଁ ଚାହିଁ, ବସି ଦିନ ନାହିଁ
କେବେ ସେ ଥରେ ରାଜ ନାଜ ଗାଇବ
(ନବ) ଭଙ୍ଗି ତ୍ରିଭଙ୍ଗ ଧରି ମୋହନ
ଧର୍ମ୍ମ ପ୍ରେମ ଭରେ ଶିହରି ଶିହରି ॥

—○—

( ୨୪୬ )

ଦୟା-ସାଗର ବୋଲାଇ କଲ ପାତର ଅନ୍ତର
କାହା ଭାଗେ ଖଣ୍ଡ-ଖିଆ—କା'ର ଅଇଁଠା ପତର ।୦।
ଦିନ ରାତି ଡାକି ଡାକି—କଣ୍ଠ ମୋ ଗଲାଣି ଶୁଖି
ପାହୁଣ୍ଡେ ତ ଚଳିବାକୁ—ଆଜ ନଚଳେ ଗତର ।୧।
କେ ଅବା ଦେଇଛୁ କଷ—ମୁଁ ହେଲି ତୁମର ବଷ
ଦୁଃଖ ପରେ ଦୁଃଖ ଦାଜ—ସହିବ ମୁଁ କ ପାତର ।୨।
ଫଟା କରମକୁ ମୋର—ଯୋଡ଼ିବାକୁ ନାହିଁ ବଳ
ଏ ତା ପଟଣ ତନପୁରରେ—କାହିଁକି ଏଡ଼େ ଗୁହାର ? ।୩।

———

( ୨୪୭ )

ଚକା ଡୋଳା ! ଚକାଡୋଳା !
ଭଲ ଲଗାଇଛ ବସି ମେଳା ।୦।
ପଥର ଦେଉଳେ, ଗଣ୍ଡି କାଠ ଦିଅଁ, ହାତ ଗୋଡ଼ କାନ ନାହିଁ,
ପଲକ ନ ପଡ଼େ, ଚକା ଚକା ଆଖି, ମୁହଁଯାକ କଳା ବୋଳା ।୧।

ଛେଚ୍ଛ କଚ୍ଛ ଖାଇ, ପଦ୍ମଶ୍ରୀକୁ ଭଜେ, ପେଟରେ ଦଉଡ଼ି ବନ୍ଧା,
ନିଜେ ବୁଝିଁ ଏବେ, ଲୋକଙ୍କୁ ସନ୍ତୋଇ, କି ସୁଖ ସେ ଠେଲିପେଲି ।୨।
ରତନ-ବେପାରେ, ଛପନ ଭୋଗରେ, ଛତିଶା-ନିଯୋଗ ଖଟେ,
ଖସ-ବରଷାର, ମଣ୍ଡଳ ସମ୍ଭାଳ, (ବଡ଼) ଦେଉଳ ପଡ଼ିଛି ମେଲି ।୩।

---

( ୨୪୮ )

(ଜୟ) ଶମ୍ଭୁ ଶିବ ହର ଶଙ୍କର !
ଜୟ ଚନ୍ଦ୍ର-ମୌଳୀ, ବିଭୂତି-ବିଭୂଷଣ
ମଧୁର ଛବି, ଗୌରୀ-ସୁଖ-ବର୍ଦ୍ଧନ
ନିଗମ ଯୋଗୀଜନ ବରଦ ସୁନ୍ଦର ।୦।
କାମ-ଗର-ହର ଅନ୍ଧକାର !
ମୁଖ-ସୁଧାକର-ମାନହାରୀ,
କୁଟୀଳ-ଜଟ ସୁରଧୁନି ବିରାଜିତ
ଜାଗ ଜାଗ ଦିଗମ୍ବର ! ।୧।
ଡିମିକ ଡିମି ଡିମି ଡମରୁ-ଧର-କର
ଭୂତ-ସଙ୍ଗୀ ଶ୍ମଶାନ-ଈଶ୍ବର,
ତିନ ଜଗତ ଶିବ-ଦାୟୀ ହେ ।
ଜିବଚନ୍ଦ୍ର ଭବ ପଦ କିଙ୍କର ।୨।

---

( ୨୪୯ )

ଘୋର ଆସେ ଘନ ଘୋର, ଘେନ ମିନତି
ସାହା ନାହିଁ କେହି ଆଜ ତୁମେ ତ ଗତି ।୦।

ମନ-ଫୁଲ ଚନ୍ଦନ
ଘେନାଁ କର ବନ୍ଦନ !
ଝର ଆଖି ନୀରଧାରେ ପଖାଳୁଛି ମୁଁ ନିତି
ଅସର କାଟିଛୁ କେତେ ଘୁମ-ଭୁଲ ରାତି ।୧।
ନାହିଁ ଜାଣେ ମନ୍ତ୍ର
ଭାବ-ହରା ଅନ୍ତର,
ନଜାଣେ ପୂଜନ ରୀତି, ନ ଜାଣେ ଭକତି,
ତୁମେ ଅମା-ଦୀପଶିଖା ! ଦିଅ ହେ ମୁକତି ।୨।

—o—

( ୨୫୦ )

ବାଦଲ ବରଷା ଶେଷେ, ମଧୁ ମାସ ଯେବେ ଆସେ
ଆସ ବୋଲି କହେ କିଏ କି ?
ଘନ-ଘୋର ଅମା-ରାତି ଅନୁସରେ ରବି ନିତି
ଆସ ବୋଲି କହେ କିଏ କି ? ।୦।
ନଟ-କୁଟ ଯେତେ ଯାହା, ତୁମରି ଭିଆଣ ତାହା
ଦରିଆ ମଝିରେ ଶୋଇ ସବୁ କରୁଥାଅ ସାଇଁ
ଆସ ବୋଲି କହେ କିଏ କି ? ।୧।
ଦୁନିଆଁର ଦୁଃଖ ସହି, କାନ୍ଦୁ ଥାଏ ଯେବେ ମୁହିଁ
ଅନ୍ଧାରେ ବିଜୁଳି ପରି ଆଶାର ମସାଲ ଧରି
ଆସ ବୋଲି କହେ କିଏ କି ? ।୨।
ନିତି ତ ଦେଖେଁ ଏ କଥା ହେଜି ପାରେ ନାହିଁ ମଥା
କାହିଁକି ଏ ନବରଙ୍ଗ କରିବାକୁ ଏତେ ରଙ୍ଗ
ଆସ ବୋଲି କହେ କିଏ କି ? ।୩।

———

( ୨୫୧ )

ଅନ୍ତରେ ଯେତେ ବେଦନା ଗୁମରେ ମୋର
ସବୁ ପରଶେ ତୁମରି ମନ,
ଅଜାଣତେ ଚାହିଁ ଫେରି ଫେରି ଯାଏ ନିତି
ତୁମରି ଉନ୍ମନ-ନୟନ ।୦।
କାନନ ମଝିରେ, ସେଇ ବେଣୁ ସୁର ଝରେ
ଗୋପନେ ମରମେ ସପନ ବେଦନା ରଚେ କଣ୍ଟକ-ବନ ।୧।
ବାଧେ ନାହିଁ ମୋତେ ପାଇ ନାହିଁ ବୋଲି
ତୁମକୁ ମରମ ଘରେ,
ନବୁଝିଲ ଯାହା, ତୁମ ପଥ ଚାହିଁ
ଦୀପଟିଏ ଜାଳି ମରେ;
ପ୍ରଣାମ ଗୋଟିଏ ଦେଇ
ରହେ ଖାଲି ମନ ଚାହିଁ
ଦୂର ପରଦେଶୀ, ଦୂରରୁ ତୁମକୁ
ଭେଟିବାକୁ ମନ-ଧନ ।୨।

———

( ୨୫୨ )

ତୁମରି ଆଶାରେ, ଅଦେଖା ଠାକୁର
ପଞ୍ଚ ପ୍ରଦୀପ ଜାଳେ
ନ ପଶୁର ପଛେ, ତେବେକେ ବସେ ମୁଁ
ତୁମରି ଚରଣ ତଳେ ।୦।

ଝଞ୍ଜା ବହୁଛି କେତେ
ଅଗରେ ଜୀବନ ସାରା,
ତେବେକେ ଅଳିଭା ଦୀପ ଶିଖା ମୋର
ସାକ୍ଷୀ ଅଛି ଶଶୀ ତାରା;
ଭୁଲିଅ ନାହିଁ ଗୋ ପଥର ଏଥର
ମାୟାର ମୋହମ ଛଳେ ।୧।
ମରଣ ଘାଟରେ ବସି
ଡାକେଁ ଦୂର-ପରଦେଶୀ,
ଭଙ୍ଗା ତରୀକ ବାନ୍ଧି ନିଅ, ଆସ ଜୀବନର ସଞ୍ଜବେଳେ
କଙ୍କଣଶୀ ଧନ-ରତନ ସ୍ନେହେନା ମାଗୁଛି କରୁଣା ଚଳେ ।୨।

---

( ୨୫୩ )

ଘନ ଘୂର ବରଷା ଝରେ,
ତଣ୍ଡି ହସେ ଅକୂଳେ, ଡହିମ୍ନ ମରେ ।୦।
ଅକାଳ ବତାସୀ – ଘନ ଘେରିଆସି
ପ୍ରଳୟ ରଚେ ସେ ମେଘ ଘରେ ।
ନାହିଁ କେହି ସାହା, କରିବ କେ ଆହା
ନୟନେ ନୟନେ ନୀର ଝରେ,
ତୁମେ ତନ୍ଧାରୀ, ଧ୍ୟାନ ଦୁଃଖ-ହାରୀ
ଭରସା ଏକା ଏ ଅନ୍ଧକାରେ,
କଙ୍କଣଶୀ ଡାକେ ମରଣ ଆତଙ୍କେ
ଶରଣ ଦିଅ ହେ ଦେବ ଥରେ ।୨।

---

( ୧୫୪ )

ମନ-ବନଚାରୀ ! ମୁରଲୀ ଅଧରେ ଧର, କୁଞ୍ଜ-ବିହାରୀ ।୦।
ଯମୁନା ନୀର ତୀର — ବନ ଚହଲାଇ
କୋଇଲି କଣ୍ଠରେ କୁହୁ ଚମକାଇ
ବରଜ-ଗୁଆଳୀ ଚିତ୍ତେ ଚହଲ ପକାଇ,
ମହୁଆ, ବୁଲେ ଘୂରି ଫେରି ।୧।
ମଧୁ-ଫୁଲସଞ୍ଜେ—ମଧୁପିଆ ଗୁଞ୍ଜେ
ମାଧବୀ ନିକୁଞ୍ଜେ — ହସେ ଫୁଲ ପୁଞ୍ଜେ
ଧୀମା ପଦ-କଞ୍ଜେ — ଅଳକତ ରଞ୍ଜେ
ରସିଆ, ଦେ' ତୁ ଫୁକାରି ।୨।
ଗୁରୁ ଗୁରୁଜନ ବାଧା ପଛକୁ ପକାଇ
ରେଣୁ ଅଭିସାରିକା ବେଣୁ ସୁରେ ବାଇ
ଚଳି-ପଥ ଚେଣୁ କଣ୍ଟଶୀ ରହୁ ଧାଇଁ
ଛଇଳ ! ଏତିକ ଗୁହାରି ।୩।

———

( ୧୫୫ )

ଜୟ ପରମେଶ୍ୱରୀ !
ଚରଣେ ଶରଣ ଦେ'ମା ହର-ମୋହିନୀ ଶଙ୍କରୀ ।୦।
ଜଗତ ଦୁଃଖ ଜଞ୍ଜାଳ
କରେ ମା ନିତି ବିକଳ
ସାହା ଭରସା ବିଫଳ    ହୋଇଛି ଗୋ ଶୁଭଙ୍କରୀ ।୧।

ଭଗାଣ ପୀଡ଼ନ ଡରେ
ଯେବେ ମୋ ଜୀବନ ଥରେ
ଡର ପଗ ଘୂଞ୍ଚେ ଡରେ, ଦେଲେ ତୋ ନାମ ସୁମଣ ।୨।
କାହାଣ ଲାଞ୍ଛନା ମାଳିଁ
ତିଳେ ହ ପସଗ ନାହିଁ
ଦେଲେ କବିଚନ୍ଦ୍ର ପାଇଁ ତୁ' ଏକା କାନ ପସାଣ ।୩।

— — —

( ୨୫୬ )

ମନ୍ଦ ସମୀରେ ସେ ଯେ ଗନ୍ଧ ମନ୍ଦଗ
ଚନ୍ଦ୍ର ଡନୁରେ ସାଗ ଆନନ୍ଦ ଧାଗ ।୦।
ନାଚେ ସେ ରଙ୍ଗେ ଜଳଧି ତରଙ୍ଗେ
ଭରମାଏ ଭୃଙ୍ଗେ ଅଗଣନ୍ଦ ସଙ୍ଗେ
ପ୍ରେମେ ବିଭୋଗ ।୧।
ଅଶନ ବିହାରେ ନର୍ଘୋଷ ସେ ଯେ
ଦାମିନୀ ଅଙ୍ଗେ ଝଲସି ବିଗଜେ
ଝଡ଼ ଗଞ୍ଚ ସାଗ ।୨।
ଥାଏ ସେ କାହିଁ ଯାଏ ସେ କାହିଁ
ନଶି ଦିନ ଖୁଣ୍ଡିଁ ଦରଶନ ନାହିଁ
କଲପନା ହାଗ ।୩।
ଭଣ୍ଡ ଯେବେ ଭାସେ ସଜଳେ ନୟଣେ
କବିଚନ୍ଦ୍ର ଭାଷେ ବରଷେ ସଦା ସେ
ଆଶିଷ ଧାଗ ।୪।

———

( ୨୫୭ )

ତୁମଠାରୁ ବଳି କିଏ ଅଛୁ ମୋର ପ୍ରିୟ
କାହାର ଦୁଆରେ କହିବି ମୁଁ କ୍ଷମା ଦିଅ ? ।୦।

ଜଣା ଅଜଣାରେ ଅଗଣିତ ଦୋଷ
କଣା ବୋଲି କି ମୁଁ କରିବ ନିସ୍ତଶ ?
ଦୟାନିଧି ଦୟାକର
ତୁମେ ତ କ୍ଷମାସାଗର,
ତୁନ ହେବେ କାହିଁ ରହ ? ।୧।

ମୋ ଲାଗି ଶୁଖିଛୁ ଦରିଆର ଜଳ
ନନ୍ଦନେ ମୋ ଲାଗି ନାହିଁ ଫୁଲ ଫଳ
ତୁମେ ନ ସହିବ ଯେବେ
ପ୍ରଭୁପଣ କାହିଁ ତେବେ
କହିଲେ ରୋଷ ନ ବହ ।୩।

ଦୋଷ ମୁଁ କରୁଛି, ତେବେକେ କହୁଛି
ଦୂରେ ଠେଲି ପୁଣି ଶରଣ ପଶୁଛି
ଦୀନ କବିଚନ୍ଦ୍ର ବୋଲେ
ଏଇ ଦିନ ଶେଷେ ବେଳେ
ଆଡେ଼ ହେଲେ ଥରେ ରୁହ ।୪।

---

( ୨୫୮ )

ମନ କଥା ଶୁଣ ମା ଶ୍ୟାମା !
ବାମ ମୋ କରମ ବୋଲି
ବାମ କି ତୁ ହର-ବାମା ? ।୦

ମନେ ମନେ କେତେ ଭାବେ
ଥିବ ଚିର ତୋର ଭାବେ
ଭାବନା ମୋ ଭାସେ ନାହିଁ, ସେ ମତରେ ଉର୍ଦ୍ଧ୍ୱ ଜମା ।୧।
ପଲକ ମାତର ପାଇଁ
ମନ ଘରେ ମନ ନାହିଁ
ଝଞ୍ଜା ବହେ ତହଲିଲ ବଳିଯାଏ ବଳ ସୀମା ।୨।
ବୁଝେ ଆନ, କରେ ଆନ
ବାରେ ବାରେ ବାର ମନ
ଏ କି ଥିବ ଚିର ଧନ କରୁଣା ନାହିଁ କି ଉମା ? ।୩।
ଯାହା ଇଚ୍ଛା ତୋର କର
ଆଣ ନାହିଁ ଆନ ବର
କବିଚନ୍ଦ୍ର ମାଗିବାର ସେତେ ଦୋଷ କର କ୍ଷମା ।୪।

———

( ୨୫୯ )

ହେ ଅନନ୍ତ, ହେ ମହାନ୍ !
ଶରଣ ଚରଣେ ମାଗେ,
ନିଖିଳ ଭୁବନ ଅନ୍ତରେ ତବ
ମହିମା ନିରତ ଜାଗେ ।୦।
ରବି ଶଶୀ ତାରା ଗଗନ ପବନ
କୋଟି କଣ୍ଠେ କରେ ତବ ଗୁଣ ଗାନ
ଶତ ଶତଦଳ ହସେ ଅବିରତ
ଅମଳ କିରଣ ରାଗେ ।୧।

ଶୁଦ୍ଧ ବୁଦ୍ଧି ଧର୍ଯ୍ୟ ଜ୍ଞାନ
ଦିଅ ହେ ସକଳ ଗୁଣ-ନିଧାନ
ଦୀନ କରଣଶୀ ଜୁହାର ଜଣାଏଁ
ଅନାଥ ହେ ଅନୁଗତେ ।୨

---

( ୨୭୦ )

ଆରେ ମନୁଆଁ —
ଦଇବ ଦଉଡ଼ି ତୁ ତ ଗାଣ୍ଠି,
ଯେଣିକି ଦଉଡ଼ି ଟାଣେ ତେଣିକି ତ ଯାଇରେ— ।୦।
ମନ କରେ ମନ ତୋର ରାଜ-ସିଂହାସନ
ଜଇ କାଟିଲେଣି ତେଣେ ମୂଳ ମାଟି ମାନ
ଭୁଷୁଡ଼ି ପଡ଼ିବ ଯେବେ ଯୋଗ ଏକା ନାହିଁ ରେ ।୧।
ଉପରେ ତଡ଼ିକ ଡାକେ, ତଳେ ବହେ ଗଙ୍ଗା
ଦଦରା ତୋ ନାଆ ଖଣ୍ଡି କାଠ ପୁଣି ଭଙ୍ଗା
ତୋଡ଼ ମୁହେଁ ଟେକ ମାର ଭଉଁରୀ ଖେଳେରେ ।୨।
ମେଘୁଆ ନିର୍ଝୁମ ରାତି ବାଟ ଅନ୍ଧାରୁଆ
ସାହା ନାହିଁ ବାଟୋଇ ରେ ! ଅଛି ନିସ୍ତୁଟିଆ
ମୁଖେ ରାମ, ପଦେ ଧ୍ୟାନ ବୁଲ ନାମ ଧାପ୍ପି ରେ ।୩।
ଝିଂରନା ରେ ଲୁହ ଧାର ଗୁଞ୍ଜି କର ଟାଣ
ଧରମ ଧାରଣା ଧର ଡାକ ଭଗବାନ,
ମେଣ୍ଟୁ ଖାଲଟିବ ଫୁଲ, ଦେଲେ ସେ ଅନାଇଁ ରେ ।୪।

---

( ୨୭୧ )

ଜଗନ୍ନାଥ ! ଧରିବ ନାହିଁ ମୋ ଦୋଷ
ଯେତେ ଦେଉଥିବ ସେତେ ମାଗୁଥିବି
କାହିଁରେ ନୁହେଁ ମୁଁ ତୋଷ ।୦।
ଦିଅ ଦିଅଁ ବୋଲି ନିଅ କର ମେଲି
ଛୁଆ ସିନା କରେ ଆଶ,
ମୁ ନକି ନୋହିଲେ ମୁନିକି ହେଲେ କି
ମାଗନ୍ତି ହେଲେ ବି ଦୋଷ ।୧।
ଯେ ପିତା କୋଳରେ ଜନମ ସମାଦର
ନ ଜାଣେ କି ପୀତବାସ !
ଯେ କରେ ମୁଁ କରେ ପ୍ରଣତି ପଦ୍ମରେ
ପାତିବି ଇତର ପାଶ ? ।୨।
ଥୋଇ କି ଦେଇଛ ଲୋଡ଼ିବା ଆଗରୁ
ଜଠର ବୋଲିବ କସ ?
ଶରଣ ନେବେକେ ମାଗେ କବିଶଶୀ
ଏବେକେ ମାଗୁଣି ଶେଷ ।୩।

---

( ୨୭୨ )

ଶ୍ୟାମା ! ଏ କି କଲୁ ମା ।
ଯେ ଶାଖାରେ ଦେଲି କର, ସେ ଶାଖା ଭାଙ୍ଗି ତ ଦେଲୁ ।୦।
ତୁ ଜାଣୁ ତୋ ମନ ଭାବ !
କି ଅଛି ମଙ୍ଗଳ ଧବ
ଅବୋଧ, ଅଜାଣ ମୁଁ ଯେ ଧାର ମାର ଝୁରିଲୁ ।୧।

କର ବଢ଼ାଇବା ମନ
କଏ ଦେଲା ଅକାରଣ
ଆଶାର ଆଶା ସରିଛେ, କାଆ ମଙ୍ଗ ବୁଝାଇଲୁ ।୨।

କବିଚନ୍ଦ୍ର ମାଗେ ମାଆ
ଯାହା ଇଚ୍ଛା କର ତାହା
ସବୁ ଶୁଭ ଲାଗି ମୋର, ଏତିକ ମନ ନ ଭୁଲୁ ।୩।

———

( ୨୬୩ )

ଜନନୀ-ଶ୍ୟାମା ! ଚରଣ ଦେ'ମା,
ଭକତି-ପ୍ରଣତି ମୋର ଚରଣେ ତୁ ନେ'ମା ।୦।

ନଗରାଜ କେମାମଣି !
ନାଗ ଧର ଶର ମଣି
ଜଗ-ଦୁରିତ ତାରିଣୀ ଭବାନୀ ଉମା ।୧।

ଦଶଭୁଜା କରାଳିନୀ
ସିଂହପର ବିହାରିଣୀ
ଅସୁର ବଳ-ହାରିଣୀ ଗୁଣ ଅସୀମା ।୨।

କବିଚନ୍ଦ୍ର ମୁଢ଼ମତି
ଜଣାଏ ଗୋ ଭଗବତି !
କୋଟି ଅପରାଧ ସହି ! କର ଗୋ କ୍ଷମା ।୩।

———

( ୨୬୪ )

ସୁନ୍ଦର ହେ, ମନ ମନ୍ଦରେ ମୋ
ଆଜ ଗାନ ନଳାଞ୍ଜ-ଚନ୍ଦାଶ୍ରୀ ।
ହେ ମନମୋହନ, ତାପ-ହନାଶନ
ଆଶ ନ ନାଶ ମୁରାର ।୦।
ବଙ୍କିମ ଠାମ ତ୍ରିଭଙ୍ଗ-ମନୋହର
ନୂପୁର ଶୋଭିତ ଚାରୁ-ଚରଣ-ପର
ଶରଣ-ଭିଖାରି ମୁଁ ହେ ମୁରଲୀଧାରୀ !
ବ୍ରଜ-ବନିତା ମନ-ଚୋରୀ ।୧।
ଘୁଇ ରହେ ଘନ ଘୋର ଅନ୍ଧାରୀ,
ଘୁରି ଥରେ, ପଥ ଦୁସ୍ତର ଭାରି,
ତୁମ ବିନୁ କେ କହ ସଙ୍କଟ-ହାରୀ
ଜାଳ ବନ୍ଧ ନରକାରି ।୨।
ଘୋର ଅପରାଧୀ ମୁଁ ହେ ଦୁଃଖ-ଭଞ୍ଜନ,
ପାପୀ ଅଜାମିଳ ନରକ-ଉଦ୍ଧାରଣ
ଗଜବର ଆତୁର-ନାଶନ-କାରଣ
କହବଶୀ ଖେଦ ନବାରୀ ।୩।

—o—

( ୨୬୫ )

ଏ କ ରଚନା ଠାକୁର !
ତର ଅବୁଝା ତ ମୋର ।୦।

ଯେବେ ଧାଏଁ ମେଘ ଝରୁ ଥାଇ
ତେବେ, କୋଇଲିର କୁହୁ କାହିଁ ?
ଶସ୍ୱରେ ଉଇଁବ ତାରା, ଏ କି ତୁମର ଚତୁରୀ ? ।୧।
ଯେବେ, ଯୋଡ଼ା ଆଖି ଲୁହ-ମଖା
ମୁଖେ ଫୁଟିବ କି ହସ ରେଖା ?
ଶୁଣ, ବେଦନା ଝରିବ ସିନା,
'ସେ କି ଗାଇବ ତୁମର ସୁର ।୨।

---

( ୨୬୭ )

ଚିକ୍କଣ କାଳିଆ ଘନଶ୍ୟାମ,
ମୂରତି ଲଜାଇ-କୋଟି-କାମ ହେ ।୦।

ଏଇ ରୂପ ଧରି ସିନା—
ହେଲ ସଇ-ମନ-ଜଣା
କିଏ ଦେଲା ନଟବର ନାମ ହେ ? ।୧।

ଅପବାଦ ଆପି ଶିରେ,
ସାରିଲ ତ ଯଶୋଦାରେ
କି ଦୋଷ କଲା ସେ ଗୁଣଧାମ ହେ ।୨।

ତୁମ ସେବା କଲା ଜନ
ଜୀବନ ତାରି ମରଣ
ଆଜି ମାରି ସାରି ଦୟା-ଧାମ ହେ ।୩।

କାହିଁକି କରୁଣାସିନ୍ଧୁ
ନାମ ଧର ବ୍ରଜବନ୍ଧୁ !
କହୁଛି ଶଶୀ କରମ ତ ବାମ ହେ ।୪।

( ୨୭୨ )

ବିଚାରୁଛି ମୁହିଁ ମନେ,
ତୁମେ ମତ ପିତା ଦୀନବନ୍ଧୁ ବୋଲି
କହନ୍ତି ଜଗତ ଜନେ ।୦।
ନ ନେଇ, ନ ଖାଇ, କିଛି ହେ କହାଇ
କାହାଠାରୁ ଭଲ କହ,
ଅନାଇଁ ଦେଇଛ ବଳେ ବଳେ ସତେ
କାହା ଶିରେ ଅନୁଗ୍ରହ
ଦେଖିନ କାହିଁ ସପନେ ।୧।
ଜଗତର ସବୁ ସୁଖ ପାସୋରି ଯେ
ତୁମକୁ ପାଇଲା ସୁଖ,
ତାହାର କରମ ଫାଟିଲା ଦେଖୁଛି
ଭୋଗି ସେ ଯେତେକ ଦୁଃଖ
ନାହିଁ ପରମାଦ ଗଣେ ।୨।
ଜନମକାଳରୁ କାଙ୍ଗାଳିଆ ବୋଲି
ଜାଣି କି ନଥିଲ ମୋତେ,
ଅନ୍ତର ନ ବୁଝି ଯେବେ ଅନ୍ତର୍ଯାମୀ
ବୋଲାଇ ହେଉଛ କେତେ
କହୁଚନ୍ଦ୍ର ଏତେ ଭଣେ ।୩।

( ୨୭୮ )

ହେଲି ଯେବେ ଅପରାଧୀ ମା,
କ୍ଷମାମୟୀ ମାଆ ତୁହି ନ ପାରିଲୁ କରି କ୍ଷମା ?
ସନ୍ତାନ ଅବୋଧ ତର
ଅଜଣା ଯେବେ ମା ତୋର
ଜଗତ-ଜନନୀ ବୋଲି, ବୋଲାଅ୍ କାହିଁକି ଉମା ? ।୧।
କୁମାତା ବୋଲି ତ କାହିଁ
କାନେ ମୋର ଶୁଣି ନାହିଁ
ମୋ ସରି କୁପୁତ୍ର ଭବେ, ଜନମ କେ ଦେଲା ଶ୍ୟାମା ।୨।
କହଚନ୍ଦ୍ର ପଚରଇ
ବୋଲାଇ କରୁଣାମୟୀ
ମୋହର ଦୋଷକୁ ଏକା, ନ ଗଣିଲୁ ହର-ବାମା ।୩।

———

( ୨୭୯ )

ଶ୍ୟାମା, ଚରଣ ତଳେ ଶରଣ ଦେ' ମା ।୦।
ଶଙ୍କରୀ-ଶୁଭଙ୍କରୀ
ଭବ ଜୀବ-ଦୁଃଖ-ହାରୀ
ସନ୍ତାନ ନତ ଯେନ, ଶିବ ଶୁଭଦେ ମା ।୧।
ଶୁଣ ମା ଗୋ ! ବ୍ରହ୍ମମୟୀ
ତୋ ବିନା ଭରସା ନାହିଁ
ଅଗଣନ ଅପରାଧ କ୍ଷମ କରଦେ ମା ।୨।

ଏତିକି କରୁଣା କର
କବିଚନ୍ଦ୍ର ମାଗିବାର
ଅନ୍ତେମେ ସ୍ଥାନ ଦେବୁ ତୋର ଶ୍ରୀପଦେ ମା ।୩।

---

( ୨୭୦ )

ସତ କହ ପ୍ରିୟ ମୋର,
ତିନି ଜଗତରେ ତୁମ ଠାରୁ ବଳି
କିଏ ଅଛି ବଡ଼ ଚୋର ।୦।
ଆକାଶ ନୀଳ ବରଣ
କରିନାହଁ କି ହରଣ
ଧାଇଛି ନାହିଁ କି ଚରଣ ତଳରେ
ଚୋରାଇ କମଳ ଦଳ,
ଚୋରି ନାହଁ କି ଦେହ, ଅଙ୍ଗେ ସୁବାସ
ସରଗ ପାରିଜାତର ? ।୧।
ତୁମେ ହସ ରଜା ପୁଅ,
କି ଅଭାବ ଥିଲା କହ ?
ତେବେ ହେଲେ ଦଧି, ଶିକାରୁ ଚୋରାଇ
ଖାଇଛ ଲବଣୀ ସର,
ଗୋପ-ଗୁଆଳୀର ଖୁଆର ପାହାର
ଗଲା କି ମନୁ ପାସୋର ।୨।
କେଡ଼େ ଅଲାଜୁକ ସତେ !
ଡର ଭୟ ନାହିଁ ଚିତ୍ତେ

ଯମୁନା ତଟରେ, ଗାଧୁଆ ତୁଠରେ
ବେଳ ଯାଣି ଲୁଚ ଥିଲ,
ବରଜ-ଗୁଆଳୀ ଲାଜବନ୍ତ ଆଳୀ
ଛଡ଼ା ଶାଢ଼ୀ ଦେଖି କଲ ? ।୩।
ଧନ ତ ନେଲ ଦେଖାଇ
ମାନ ତ ନେଲ ଦେଖାଇ
ଅଣ୍ଟା-କଅଣ୍ଟାଙ୍କୁ ସରଳା ମନକୁ
ଦେଖାଇଛ ଦଗାଦ୍ୱାର,
କବିଚନ୍ଦ୍ର ବୋଲେ ଧରା ପଡ଼ିଗଲେ,
ଶିଖିଛ ପଳାଇବାର ।୪।

---

( ୨୬୧ )

ତୋ ବନା କହନା କାରେ ଡାକବ ମୁଁ ମାଆ ବୋଲ,
କଏ ସେ ସନ୍ତବ କହ ସନ୍ତାନ ଅଳ-ଝୁଲ ? ।୦।
ଆସେ ଯେବେ ଘନ ଘୋର
ବୁକୁ ଉଠେ ଥର ଥର,
ସାହା କେ ଜଗତେ ମୋର, ତୋ ବନା କହ ମା କାଳୀ ।୧।
ଯେବେ ଗୋ କରୁଣାମୟୀ !
ଆଡ଼େ ତୁ ନ ଦେବୁ ଚାହିଁ
ଦୁରୁହଦନେ ଏ ତଡ଼କ ପାରବ କ ମୁଁ ସମ୍ଭାଳ ।୨।
ମୋ ନୟନ ଝରଧାର
ସୁଝ ଯେବେ ଲାଗେ ତାର !
କହ ତେବେ କବିଚନ୍ଦ୍ର ଦେଉ ତୋର ପଦେ ଢାଳ ।୩।

---

( ୨୭୨ )

ଦୁଃଖ ଯେବେ ଦେଲୁ ମା ତାରା,
ଦେ' ତୋର ମନଭରା
ସହିବା ଶକତି ଖାଲି
ମାଗୁଛି ତୋତେ ଶଙ୍କରୀ ।୦।

ନରେଖି ସନ୍ତାନ ଦୁଃଖ
ଲଭିବୁ ଯଶ ତୁ ସୁଖ
ଚିରଦିନ ଏ ଆଖିରେ ରଖି ଦେ'ମା ଲୁହ ଭରି ।୧।

ଅମାଜର ସାଥୀ ମୋର
ଲିଭାଇ ଦେ ରବିକର
ଅଥଳେ ଭାସୁ ମୋ ନାଆ
ଖେଳୁ ସେ ଚକା-ଭଉଁରୀ ।୨।

ଦିଅ ଦୁଃଖ ଅଶ୍ରୁ ଯେତେ
କହିବନି, ମାଗେ ଏତେ
ବିଶ୍ୱାସ ତୋ ପଦତଳୁ—ନଆନା ମନରୁ ହରି ।୩।

———

( ୨୭୩ )

ମନ, ତାରା ନାମ ଭଜରେ,
ଭବ ବନ୍ଧନ, ମୋହ ଭରମ
ଛିନ୍ନ ତୁ ମନୁ ତେଜ ରେ ।୦।

ଶକ୍ତିମୟୀ ସେ ମୁକ୍ତିଦାୟୀ
ତା ବିନେ ଭୁବନେ ସାହା କେ ନାହିଁ,
ତାସ୍ୱ ଦ୍ୱାର କଣ୍ଠ ତୋର—
ସାର କରି ତୁ ଦେହ ରେ ।୧।
କାଳୀ କହି ତୁ ଭଜନମାଳ
କାଳୀ ପଦ୍ମରେ ମତ୍ତ ଦେ ଢାଳ,
ଆନେ ରସନା, ମାନ ତୁ ମନା—
ଶଙ୍କସ ରସେ ମଜ୍ଜ ରେ ।୨।
ତ୍ରିନୟନୀ ଗୋ ମାଆ ଭବାନୀ !
ନାମ ତୋର ଶାନ୍ତି-ଦାନୀ
କବଶଶୀ ଶିରେ ମଣ୍ଡନ କର—
ଚିର ତୋ ପଦ-ରଜ ରେ ।୩।

---

( ୨୭୪ )

ବିକଳ କର ମା ସକଳ ଅଙ୍ଗ
ରସନା ମାତର ଥାଉ,
ପସରୁ ନ କରି, ଅସରୁ ଦୁଃଖ
ତାସ ତାସ ଖାଲି ଗାଉ ।୧।
ଶିବର ଘରଣୀ ତୁମ୍ଭ,
ଅ-ଶିବ ତୋ ଘରେ କାହିଁ ?
ମାଆ କି ପାରିବ ସନ୍ତାନ ଶିରେ ଅଜାଡ଼ି ଦୁଃଖ ଦାଉ ?
ଦୁଃଖ ଯାହା ରେ ବୋଲୁ ଛୁ ସେ ତୋର ଆଶିଷ ବିନେ କି ଆଉ ।୨।

ତୋର କଲ୍ୟାଣ ଝର
ବରଷେ ମଥାରେ ଯାର
ଅନୁଭବ ମୋର, ଦୁର୍ଦ୍ଦିନ ତୋର ଦୁଆର ବନ୍ଧ ସାନ୍ତ୍ୱ,
ଗଳସିବା ପାଇଁ ବିଶ୍ୱାସୀ ମନ ସେ ଯେ ଚଣ୍ଡାଳ ସନ୍ତ୍ୱ ।୨।

ଧନ ଜନ ମାଗୁ ନାହିଁ
ଶୁଣ କଲ୍ୟାଣମୟୀ !
କଷ୍ଟଶଣୀ ମାଗେ ବଦଳରେ ତା'ର ସବୁ ସୁଖ ଜଳି ଯାଉ
ଶରଣ ଯାଏ ତୋ ଚରଣ ତଳରେ ଭକତ ଅଟୁଟ ରହୁ ।୩।



( ୨୭୫ )

ଶ୍ରାନ୍ତ ଚରଣ-ପାନ୍ଥେ ସେ ବନ
ଯେ ତରୁ ଦେଉଛି ଛାଇ,
ତାହାର ଅଙ୍ଗ-ପଲ୍ଲବ ତୋଳ,
ନଦଗଲ ସେ ବଗୁଇ ।୧।

ଶ୍ୟାମ ଶାଖା ଭାଙ୍ଗି ଭାଙ୍ଗି
ଜାଳିଲ ପାନ୍ଥ ଅଗି
ଫଳ ଖାଇ ତା'ର ପୂରଇ ଉଦର
ନହାଲେ ମାରିଲ ଘାଇ,
(ପୁଣି) ଘର କରି ତାରେ ପାସୋରି ଗଲିଲ

ସୁଖେ ମୁଖ ପୋଛି ଦେଇ,
ତରୁ ତଳେ ଝୁରେ କାହିଁ ।୧।

ସେ ତ ତୁମ ସରଜନା
ତୁମରି କରଣୀ ସିନା !
କାହୁଁ କେବେ ତୁମେ ଭୁଲିଲେ ତୁମକୁ
ଚିହ୍ନିବ ମୋତେ କମାଇଁ
ତୁମ ଦୁନିଆଁ ତ କୃତଘ୍ନତାର
ଢାଳ ଜାନ୍ତ ଚଳ ଥାଇ,
ମିଛ କହିଲ କ ପାଇଁ ? ।୨।

କଥା ପଦେ ଶୁଣ ମୋର,
ଯେତେ କଲେ ସାତ ପର
ତୁମେ କି ସତରେ ଦୂରେ ଠେଲି ଦେବ
ଚରୁଁ କର ଥାଇ ସ୍ବହିଁ ?
କବିଚନ୍ଦ୍ର ବୋଲେ, ତୁମ ଘଇଜର
ପାପୁ ଜଣେ ତ ମୁହିଁ
ସତ ମୁଁ କି କହୁନାହିଁ ? ।୩।

---

( ୨୭୭ )

ମୁଁ ଯେବେ ତୁମକୁ ବାପ ନ ବୋଲିବି
ତୁମେ ବାପ ହେବ କାହୁଁ ?

'ଜଗତର-ପିତା' ଜନେ ବୋଲିବାର
ଟେକ ରହିବ କି ଆଉ ? ।୦।

ରୁଷିବାର ମୋର ଅଛି ଅଧିକାର
ବାହା ପିଛି ଏହା କହେ ବାରବାର
ଜଞ୍ଜାଳିଆ କରି ଜନମ ଦେଲ ତ—
କିଏ ସହିବ ମୋ ବାଉ ।
ଯାହେ ଠେଲି ଦିଅ, ଲୋକ ହସା ହୁଅ
ତୁମ ପିତାପଣ ଯାଉ ।୧।

ଆଗରୁ କାହିଁକି ବନ୍ଧୁର ନକଲ,
ବାପା ବୋଲାଇବା ମଣିଲକି ଗେଲ ?
ତୁମ କୁଳଦୀପ ମଳିନ ହୋଇବ
ତୁମେ ଯେବେ ଥାଉଁ ଥାଉଁ,
ଏଥୁଁ ବଳି ଲାଜ ଅଛି କିସ ହେଜ,
ବୋଲାଉଛ ମହାବାହୁ ।୨।

ବାପ ଯା'ର ରଜା ଦୟାର ଭଣ୍ଡାର
ପୁଅ କି ପାଇବ ଅଶୀଷ ତାହାର
ରୁଷିବି ଏ ଥର ହେଉ ଯା ହେବାର
ସହିବାର ଯେ'ବା ସହୁ
କବଶଶୀ କହେ—ବେଳ ଥାଉଁ ପଦେ
ଠାବ ଦିଅ, ଟେକ ରହୁ ।୩।

— — —

( ୨୭୭ )

ନାହିଁ କହିଦେଲେ କଥା ତ ସରନ୍ତା,
କାହିଁକି ପିଟନ୍ତ ମଥା,
କେତେ ଆଉ କହ, ତବସ୍ ଦ୍ୱାରେ
ଲଥା ପରେ ଦେବ ଲଥା
ଜଗନ୍ନାଥ !
ବୋଲଉଛ ଦୀନବନ୍ଧୁ ,
ମୋହର ବେଳକୁ ଶୁଖିଗଲ କି ହେ ! ଅଥଳ କରୁଣା ସିନ୍ଧୁ ? ।୧।

ନୟନେ ଯମୁନା ଉଜାଣି ଖେଳୁଛି,
ମନ ହେଲେ ଖେଳ ନାଆ
ସାରା ବରଷର ସବୁ ଋତୁ ଛାଡ଼ି
ଶ୍ରାବଣ ଧାରା ମୋ ସାହା
ଜଗନ୍ନାଥ !
ତେବେ ହେଲେ ମନୋରଥ
ପୂରିଲା ନାହିଁତ କଠୋର ପାଷାଣ ପାଲଟିଲ ସ୍ୱର ରଥ ।୨।

ଶକତି ନଥିଲେ, ବତାଇ ଦଅ ହେ
କଏ ସେ ଭରସା ଥାନ,
କାହା କାନେ ଆଉ, ଶୁଣାଇବ ମୋର
ଜୀବନର ଦୁଃଖ-ଗାନ
ଜଗନ୍ନାଥ !
ଶରଣ ରକ୍ଷଣ ବାନା ।
ଉଡ଼ାଇବ ନାହିଁ ଏ ଥର ଜଗତେ କେହେନ୍ଦୁ କରେ ମନା ।୩।

---

( ୨୭୮ )

ଯେବେ କ୍ଷୀଣ ଧାରେ ଗିରି ଝରଟି ଝରେ
(ଦେଲ) ସାଗର ମିଳନ ମନ କାହିଁକି ?
ଜୀବନେ ଯେବେ ଗୋ ମନ ଭରିଦେଲ—
ଆଶା ଭରିଦେଲ କାହିଁକି ?
ମୁଖ ଯେବେ ଦେଲ ନ ଥିଲା ମନା ତ
ଭାଷା ଭରିଦେଲ କାହିଁକି ?
ଗୋପନ ନଶିଭ ସ୍ୱପ୍ନମହଲେ ମିଛ
ସପନ ଛଳିଲ କାହିଁକି ?
ବେଦନା-ଜଡ଼ିତ ମରମରେ କହ
ସରମ ଯୋଖିଲ କାହିଁକି ?
କମ ନୟନରେ ଜଳ ଭରି ପୁଣି
କଜ୍ଜଳ ଲେଖିଲ କାହିଁକି ?
ଦୁଃଖ ସହି ସୁଖ ଦେଉଛି ଯେ ତାକୁ
ଅବଳା କହିଲ କାହିଁକି ?
ଚପଳା ଚମକ ସୁହାଗୀ ଘୁଙ୍ଗୁରେ
ବାଜ ଖଞ୍ଜିଦେଲ କାହିଁକି ?
ବରଷା-ପିୟାସୀ ଚାତକୀ ମୁଖରେ
କରକା ପକାଇଲ କାହିଁକି ?
ବାସ-ଭରା ଫୁଲ ନରମ ତନୁଟି
କୀଟରେ ଭରିଲ କାହିଁକି ?
ରସ-ଭରା ସୁନା-କୋଷ କୁମ୍ଭରେ
କଣ୍ଟକେ ଥାପିଲ କାହିଁକି ?



( ୧୭୯ )

ଯେବେ କରମର ଗାର ସାର,
ତେବେ କ ଫଳ ମା' ଡାକବାର ? ।୦।
ସାଙ୍ଗ ଦୁନଆଁ କହେ ତୁ ମାଆ
ତାଗ କାହାର ହୋଇଛୁ ସ:ହା ?
ମୁଁ ଯେ ମୋ କଲ୍ କରମ ଭୁଞ୍ଜେ—
ତୁ ଯେ କାଆକୁ କଡା ଦେବାର ।୧।
ଜନେ ଶିବରେ ଦେଲୁ ତ ଦଳ
ମନେ ଅଛୁ କ ଗଲୁଣି ଭୁଲ
କାହ୍ନିଁ ମମତା ଗୋ ଜନମାଇ—
ସୁହୁଁ ଝରେ ଯେବେ ଆଖି ମାଇ ।୨।
କଭ ଶଣୀ ପଡ଼ୁରୁଛୁ ଏତେ
ଲଭ ଛର ଦୁଃଖ ଏ ଜଗତେ
ମୁଁ ଗୋ କୁ-ସନ୍ତାନ ହେଲି ବୋଲି
ତୁ କ କୁମାତା, ହେଲୁ କଠୋର ? ।୩।

———

( ୧୮୦ )

ଡାକଲେ ଡାକବ ସିନା ଡଉମର ମାଆ ବୋଲି
ଜୀବନଟା ସାଗ୍ ମୋତେ ଭଣ୍ଡି ତ ଆସିଲୁ ଖାଲି ।୦।
ହେଉ ପରେ ଆସେ ହେଉ
ଦେଖି ତୁ କ ଦେଖୁ ନାହୁଁ
ଭରସାରେ ତୋର ମିଛେ ବନ୍ଧ ଜଏଁ ଉେଉର ବାଲି ।୧।

ବନର ସପନ ଦେଖେଁ
ପାଣି ଗିରୀ ଝାଣି ଲେଖେଁ
ମାଆ ମାଆ ଡାକ ଅବା, ଅଜ ଦୁଃଖ ଯିବ କାଲ ।୨।

ପଥର ରଜାର ଝିଅ
ପଥରେ ଗଢ଼ା ତୋ ଦେହ
ଋଷିଲେ ଋଷୁଆ ପଛେ ତୋ ନାମ ପାଷାଣୀ ଦେଲ ।୩।

କବିଚନ୍ଦ୍ର କହେ ମାଆ !
କଲ୍ୟାଣି କ ବନେ ଆହା
ତୋ ଚରଣ ଝୁଣ୍ଟି ଯାଏ ନତ ଲୁହ ଝରାଇଲ ।୪।

---